

# ମହାବୀର
# ଚକରା ବିଷୋୟୀ

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

ମହାବୀର

# ଚକରା ବିଷୋୟୀ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର

# ମହାବୀର ଚକରା ବିଷୋୟୀ

ଲେଖକ : ଶ୍ରୀ ଦିଲ୍ଲୀପ କୁମାର ସାହାଣୀ

ପ୍ରଥମ ପ୍ରକାଶ : ୧୯୯୮

ପ୍ରକାଶକ ଡକ୍ଟର ବିମଳେନ୍ଦୁ ମହାନ୍ତି
ନିର୍ଦ୍ଦେଶକ
**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**
ଜନଶିକ୍ଷା ଭବନ, ୟୁନିଟ୍-୫, ଭୁବନେଶ୍ୱର- ୭୫୧୦୦୧

ପ୍ରକାଶନ ସଂଖ୍ୟା ଏସ୍. ଆର୍. ସି.-୨୪୫-୪୬/୯୮

ମୁଦ୍ରଣ ସଂଖ୍ୟା ୨,୦୦୦

ମୁଦ୍ରଣ ନିସ୍ୱାସ, ୩, ଚନ୍ଦ୍ରଶେଖରପୁର, ଭୁବନେଶ୍ୱର - ୭୫୧୦୧୬

ମୂଲ୍ୟ ଚାରି ଟଙ୍କା ମାତ୍ର

# MAHABIR CHAKARA BISOI

Author **Shree Dillip Kumar Sahani**
1st Edition 1998

Published by : Dr. Bimalendu Mohanty,
Director
**State Resource Centre for Adult Education, Orissa**
Janasiksha Bhawan, Unit- V, Bhubaneswar - 751001

Publication No. : SRC - 245-46/98

No of Copies Printed 2,000

Printed at NISWASS, 3, Chandrasekharpur, Bhubaneswar - 751001

Price Rupees four only






# ବାର୍ତ୍ତା

**ଜାନକୀ ବଲ୍ଲଭ ପଟ୍ଟନାୟକ**
ମୁଖ୍ୟମନ୍ତ୍ରୀ

ଓଡ଼ିଶା ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ନବସାକ୍ଷରମାନଙ୍କ ପାଇଁ ସାକ୍ଷରତା ପରବର୍ତ୍ତୀ ଓ ନିରନ୍ତର ଶିକ୍ଷା ଲାଗି ପୁସ୍ତକ ପ୍ରଣୟନ ଓ ପ୍ରକାଶନ କାର୍ଯ୍ୟକ୍ରମ ଗ୍ରହଣ କରିଥିବା ଆନନ୍ଦର କଥା । ନବସାକ୍ଷରମାନଙ୍କ ମଧ୍ୟରେ ପଠନ ଅଭ୍ୟାସ ଅତୁଟ ରଖିବାପାଇଁ ଏଭଳି ପୁସ୍ତକ ଏକାନ୍ତ ଆବଶ୍ୟକ ।

ନବସାକ୍ଷରମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକଗୁଡ଼ିକର ବିଷୟ, ଭାଷା ଓ ଶୈଳୀ ସାଧାରଣ ପୁସ୍ତକଠାରୁ ଭିନ୍ନ । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଏହି ଆଭିମୁଖ୍ୟକୁ ଆଖି ଆଗରେ ରଖି **'ମହାବୀର ଚକରା ବିଷୋୟୀ'** ପୁସ୍ତକଟି ପ୍ରସ୍ତୁତ କରିଛନ୍ତି ।

ବର୍ତ୍ତମାନ ଆମ ରାଜ୍ୟରେ ସାକ୍ଷରତା ଅଭିଯାନ ଦ୍ରୁତ ଗତିରେ ଆଗେଇ ଚାଲିଛି । ସଂପୃକ୍ତ ଜିଲ୍ଲା ସାକ୍ଷରତା ସମିତି ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରଦ୍ୱାରା ପ୍ରକାଶିତ ଏହି ପୁସ୍ତକଟିକୁ ନେଇ ନବସାକ୍ଷରମାନଙ୍କୁ ଯୋଗାଇ ଦେବେ ବୋଲି ମୁଁ ଆଶା କରୁଛି ।

ସାଧାରଣ ଛାତ୍ର ଓ ପାଠକମାନେ ମଧ୍ୟ ଏ ବହି ପଢ଼ି ଉପକୃତ ହେବେ ବୋଲି ମୋର ଦୃଢ଼ ବିଶ୍ୱାସ ।

ଏଭଳି ଉପାଦେୟ ପୁସ୍ତକ ପ୍ରକାଶ କରିଥିବା ହେତୁ ମୁଁ ସଂପୃକ୍ତ ଲେଖକ ଓ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର କର୍ମକର୍ତ୍ତାମାନଙ୍କୁ ସାଧୁବାଦ ଜଣାଉଛି ।

(ଜାନକୀ ବଲ୍ଲଭ ପଟ୍ଟନାୟକ)





# ବାର୍ତ୍ତା

**ଜୟଦେବ ଜେନା**
ରାଜ୍ୟମନ୍ତ୍ରୀ
ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ, ଓଡ଼ିଶା

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ତରଫରୁ ନବସାକ୍ଷର ଓ ନିରନ୍ତର ଶିକ୍ଷା କାର୍ଯ୍ୟକ୍ରମ ପାଇଁ ପଠନ ସାମଗ୍ରୀ ପ୍ରସ୍ତୁତି ଯୋଜନାରେ **'ମହାବୀର ଚକରା ବିଷୋୟୀ'** ଶୀର୍ଷକ ପୁସ୍ତକଟି ପ୍ରକାଶ ପାଇଥିବା ଜାଣି ଅତ୍ୟନ୍ତ ଆନନ୍ଦିତ ହେଲି ।

ନୂତନ ଭାବେ ସାକ୍ଷରତା ଲାଭ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଜୀବନବ୍ୟାପୀ ପଠନ ଅଭ୍ୟାସ ବଜାୟ ରଖିବା ପାଇଁ ଏହି ପୁସ୍ତକ ଆଗ୍ରହ ସୃଷ୍ଟି କରିବ ବୋଲି ବିଶ୍ୱାସ । ପ୍ରସ୍ତୁତ ପୁସ୍ତକଟି ସୁପାଠ୍ୟ ଓ ଉପାଦେୟ ହୋଇଛି ।

ସଂପୃକ୍ତ ଜିଲ୍ଲା ସାକ୍ଷରତା ସମିତି ଏହି ପୁସ୍ତକଟିକୁ ନବସାକ୍ଷରମାନଙ୍କୁ ଯୋଗାଇ ଦେବେ ବୋଲି ମୁଁ ଆଶା କରୁଛି ।

ଏତଦ୍ ବ୍ୟତୀତ ସାଧାରଣ ଛାତ୍ର ଓ ପାଠକମାନଙ୍କ ପାଇଁ ଏହି ପୁସ୍ତକଟି ବିଶେଷ ଉପଯୋଗୀ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

ଏଭଳି ପୁସ୍ତକ ପ୍ରକାଶନ ଉଦ୍ୟମ ନିମନ୍ତେ ମୁଁ ସଂପୃକ୍ତ ଲେଖକ ଓ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର କର୍ମକର୍ତ୍ତାମାନଙ୍କୁ ଧନ୍ୟବାଦ ଜଣାଉଛି ।

(ଜୟଦେବ ଜେନା)

ଘୁମୁସର ଗୋଟିଏ ପୂର୍ବତନ ରାଜ୍ୟ । ଏହାର ରାଜଧାନୀ ଥିଲା କୁଳାଡ଼ । କୁଳାଡ଼ଠାରୁ ଟିକିଏ ଦୂରରେ କେତେଗୁଡ଼ିଏ ଆଦିବାସୀ ଗାଆଁ । ଏହି ଗାଆଁ ଗୁଡ଼ିକ ଚାରିପାଖରେ ଘନ ଜଙ୍ଗଲ ଘେରି ରହିଥିଲା । ସେଇ ଜଙ୍ଗଲ ଭିତରେ ଝରଣାଟିଏ କୁଳୁକୁଳୁ ହୋଇ ବୋହି ଯାଉଥିଲା । ଦିନକର କଥା । ସେଦିନ ଗୋଟିଏ ନଅବରଷର କନ୍ଧ ପିଲା ମୁଗୁନି ପଥର ଉପରେ ବସି ଖେଳୁଥିଲା । ଠିକ୍ ସେତିକିବେଳେ ବାଘ ଛୁଆଟିଏ ପାଣି ପିଇବାକୁ ଆସିଲା । ତାକୁ ଧରିବା ପାଇଁ ପିଲାଟିର ଭାରି ଇଚ୍ଛା ହେଲା । ସେ ତା' ପାଖକୁ ଯାଇ ତାକୁ ଛୁଇଁଲା । ତା' ପିଠି ଆଉଁଶି ଖେଳିବାକୁ ଲାଗିଲା । ବାଘ ଛୁଆ ବି ଖୁସିରେ ପିଲାଟି ସହିତ ଖେଳିଲା । ବେଳ ବୁଡ଼ି ଗଛ ଉହାଡ଼ରୁ ସୂରୁଜ ଦେବତା ବୁଡ଼ିଯାଉଥାଆନ୍ତି । ପିଲାଟିର ସେ ଆଡ଼କୁ ନଜର ନାହିଁ ।

ପିଲାଟି ଘରକୁ ଫେରି ନାହିଁ । ସମସ୍ତଙ୍କ ମନରେ ଭାଳେଣି । ରାମ ସିଂ ବିଷୋୟୀ ଜଙ୍ଗଲକୁ ଗଲେ । ସଙ୍ଗରେ ଧନୁତୀର ଓ ଟାଙ୍ଗିଆ । ଜଙ୍ଗଲ ସାରା ସେ ଖୋଜି ଖୋଜି ସେଇ ଝରଣା କୂଳରେ ଯାଇ ପହଞ୍ଚିଲେ । ଦେଖିଲେ ପୁଅ ବାଘ ଛୁଆ ସହିତ ଖେଳୁଛି । ସେ ଅବାକ୍ ହୋଇଗଲେ । ରାମସିଂ ଭୟରେ ଚାରିଆଡ଼େ ଅନେଇଲେ । ଠିକ୍ ସେତିକିବେଳେ ବାଘୁଣୀଟା ପିଲାଟି ଉପରକୁ କୁଦାମାରିବାକୁ ବସିଥାଏ । ରାମସିଂ ଡେ଼ରି

ନ କରି ବାଘୁଣୀର କାନ ମୁଣ୍ଡାକୁ ଲକ୍ଷ୍ୟ କରି ତୀରଟିଏ ମାରିଲେ । ତୀର ମାଡ଼ରେ ବାଘୁଣୀ ଘାଇଲା ହୋଇଗଲା । ଜଙ୍ଗଲ ଭିତରକୁ ଦୌଡ଼ି ପଳାଇଲା । ରାମସିଂକୁ ଦେଖି ବାଘଛୁଆ ବି ଭୟରେ ଜଙ୍ଗଲ ଭିତରକୁ ପଳେଇ ଗଲା । ଏଥର ରାମ ସିଂ ଉଚ୍ଚ ସ୍ୱରରେ ତାଙ୍କ ପୁଅ ନାଁ ଧରି ଡାକ ଛାଡ଼ିଲେ- ''ହେ ଚକରା, ଶୀଘ୍ର ପଳେଇ ଆ । ବାଘୁଣୀଟା ଘାଇଲା ହୋଇଛି । ଡେରିକଲେ ଆମ ଉପରକୁ ମାଡ଼ି ଆସିବ ।''

ଚକରା ବାପାଙ୍କ କଥା ଶୁଣି ନ ଶୁଣିଲା ପରି ହେଲା । କହିଲା ''ବାପା ! ବାଘୁଣୀଟା ମୋର କିଛି କରିବନି । ଏ ଜଙ୍ଗଲଟା ମୋର ଖେଳଘର । ସେମାନେ ସବୁ ମୋର ସାଙ୍ଗ ସାଥୀ ।'' ପୁଅ ମୁହଁରୁ ଏକଥା ଶୁଣି ରାମସିଂ ଡରିଗଲେ । ଡେରି କଲେ ବାଘଟା ସେମାନଙ୍କ ଆଡ଼କୁ ମାଡ଼ି ଆସିବ । ସେ ଚକରାର ହାତ ଧରି ଟାଣି ଆଣିଲେ ।

ରାମ ସିଂଙ୍କ ପୁଅ ଚକରା ବାଘ ଛୁଆ ସହିତ ଖେଳୁଥିବା କଥା କନ୍ଧ ଗାଁ ଗୁଡ଼ିକରେ ଖେଳିଗଲା । ସଭିଏଁ ଏକଥା ଶୁଣି କାବା ହୋଇଗଲେ । ପୁରୁଖା ଲୋକେ କହିଲେ, ''ଏହା ଗୋଟିଏ ଶୁଭଲକ୍ଷଣ । ମାଆ ବନଦୁର୍ଗାଙ୍କର ବାହନ ହେଉଛି ବାଘ । ତାଙ୍କ ଆଶୀର୍ବାଦ ନ ପାଇଲେ ବାଘ ସହିତ ଖେଳିବା କ'ଣ ସହଜ ? ମାଆ ବନଦୁର୍ଗା ଚକରା ଉପରେ ଖୁସି ହୋଇଛନ୍ତି । ସେ ବଡ଼ ହେଲେ ନିଶ୍ଚୟ ଆମର ସର୍ଦ୍ଦାର ହେବ ।''

ସେହି ସାହସୀ ବାଳକ ପରେ ଚ଼କରା ବିଷୋୟୀ ନାଁରେ ପରିଚିତ ହେଲେ । ରାଜଧାନୀ କୁଲାଡ଼ଠାରୁ ଟିକିଏ ଦୂରରେ ଗୋଟିଏ ଆଦିବାସୀ

ଗାଆଁ । ସେଇ ଗାଆଁ ନାଁ ତୋରାବାଡ଼ି । ସେଇଠି ରହୁଥିଲେ ବେଣିଆ କନ୍ଧମାନେ । ସେମାନେ ରାଜଧାନୀ ନିକଟରେ ରହୁଥିବାରୁ ଅନ୍ୟ ଆଦିବାସୀମାନଙ୍କ ଠାରୁ ଚାଲାକ ଥିଲେ । ସାହସୀ ଓ ବଳୁଆ ଥିଲେ । ଫଳରେ କାହାକୁ ଡରୁ ନଥିଲେ । ନିଜ ଗାଁ ବିଂଜିଗିରି ଛାଡ଼ି ରାମ ସିଂ ଏହି ତୋରାବାଡ଼ିରେ ରହୁଥିଲେ ।

୧୮୨୩ ମସିହା, ପୁଷମାସ ପବିତ୍ର ଶାମ୍ବ ଦଶମୀ । ଏଦିନ ରାମସିଂଙ୍କର ପୁଅଟିଏ ଜନ୍ମ ହେଲା । ଘରେ ସମସ୍ତଙ୍କର ଖୁସି କହିଲେ ନ ସରେ । ରାମସିଂ ବିଷୋୟୀ ଗାଁ ଲୋକମାନଙ୍କୁ ଓ ଆଖ ପାଖ ଗାଆଁର ମୁଖିଆମାନଙ୍କୁ ଡାକିଲେ । ଭୋଜିଭାତ ଖାଇବାକୁ ଦେଲେ । ପିଲାଟିକୁ ସମସ୍ତେ ଆଶୀର୍ବାଦ କଲେ । ସବୁ ଲୋକଙ୍କ ଆଗରେ ପିଲାଟିର ନାମ ରଖିଲେ 'ଚକରା' ।

ଜନମବେଳୁ ଚକରାର ହାତ ଗୋଡ଼ ଥିଲା ମୋଟା ମୋଟା । ଛାତି ଚଉଡ଼ା । ଆଖିରେ ଭ୍ରୁଲତାଗୁଡ଼ିକ କଳା ମଚ ମଚ ଦେଖା ଯାଉଥିଲା । ମନେ ହେଉଥିଲା, ସେ ଶାବକ ପରି ନିଦା ପିଲାଟିଏ । ଚକରାକୁ ଲକ୍ଷ୍ୟ କରି କେହି କେହି କହିଲେ "ଏ ପିଲା ବଡ଼ ହେଲେ ସର୍ଦ୍ଦାର ହେବ । କନ୍ଧ, ସମାଜର ନାଁ ରଖିବ ।"

ଚକରାଙ୍କ ପିଲାଦିନ ଖୁସିରେ କଟିଥିଲା । ସର୍ଦ୍ଦାର ଘର ପିଲା ହୋଇଥିବାରୁ ସେ ଅଭାବ ଅନଟନ କିଛି ଜାଣି ନଥିଲେ । ସାନ ଦୁଇଭାଇ ନନ୍ଦ ଓ ଶଙ୍କ ସହିତ ସେ ଗାଆଁ ଦାଣ୍ଡରେ ଖେଳିବୁଲି ଦିନ କାଟିଥିଲେ ।



ପିଲାବେଳୁ ସେ ଥିଲେ ବଡ଼ ସାହସୀ । ଜଙ୍ଗଲ ଭିତରେ ଏକୁଟିଆ ବୁଲିବା ଥିଲା ତାଙ୍କର ଅଭ୍ୟାସ । ବାପା ରାମସିଂ ବିଷୋୟୀ ଓ ଦାଦା କମଳ ଲୋଚନ ଦୋରା ବିଷୋୟୀଙ୍କ ସେ ପାଖରୁ ତୀର ମାରିବା ଶିଖିଥିଲେ । କମଳ ଲୋଚନ ତାଙ୍କୁ ଖୁବ୍ ଭଲ ପାଉଥିଲେ । ଚକରା

ସାହସୀ ହେଉ ଏକଥା ସେ ଚାହୁଁଥିଲେ । ନିଜ ବୟସର ପିଲାମାନଙ୍କ ଭିତରେ ସେ ଥିଲେ ବଳୁଆ । ଚାରିପାଞ୍ଚଟି ପିଲା ଏକାଥରକେ ତାଙ୍କ ସହିତ ଲଢ଼ି ପାରୁନଥିଲେ । ତୋରାବାଡ଼ି ଗାଆଁ କନ୍ଧ ପିଲାମାନଙ୍କର ସେ ଥିଲେ ସର୍ଦ୍ଦାର ।

ହେଲେ ତାଙ୍କର ଭଲ ଦିନଗୁଡ଼ିକ ଖୁବ୍ ଚଞ୍ଚଳ ଶେଷ ହୋଇଗଲା । ସେତେବେଳେ ଇଂରେଜମାନେ ଘୁମୁସର ରାଜ୍ୟରେ ପ୍ରବେଶ କରିସାରିଥିଲେ । ସେମାନଙ୍କ ବିରୁଦ୍ଧରେ ଲଢ଼େଇ କରିବାରୁ ଇଂରେଜମାନେ ତାଙ୍କ ବାପା, ମାଆ ଓ ଭାଇମାନଙ୍କୁ ମାରି ପକାଇଲେ । ଦାଦା ଦୋରା ବିଷୋୟୀଙ୍କ ସହିତ ଜଙ୍ଗଲରେ ଲୁଚିବାରୁ ତାଙ୍କ ଜୀବନ ରହିଲା । ସେତିକିବେଳେ ତାଙ୍କର ବୟସ ମାତ୍ର ନଅ ବରଷ ।

**ପରିବାର**

ବିଷୋୟୀ ପରିବାର ଘୁମୁସର ଭଂଜ ରାଜବଂଶୀୟ ଅମଳରୁ ରହି ଆସିଅଛି । ୧୮୩୨ ମସିହାର କଥା । ରାଜା ବନମାଳୀ ଭଂଜ ଘୁମୁସର ରାଜ୍ୟ ସ୍ଥାପନ କରି ସେଠାରେ ରାଜୁତି କଲେ । ସେ ହେଲେ ଘୁମୁସରର ପ୍ରଥମ ଭଂଜ ବଂଶୀୟ ରାଜା । ସେଇ ସମୟରୁ ଘୁମୁସରରେ ଭଂଜ ବଂଶର ରାଜାମାନେ ଶାସନ କରିଆସିଥିଲେ । ଭଂଜ ରାଜାମାନେ ଓଡ଼ିଶାର ଘୁମୁସର, ବଉଦ, ଦଶପଲ୍ଲା, ମୟୂରଭଞ୍ଜ, କେଉଁଝର, ଅନୁଗୁଳ ଓ ସୋନପୁର ରାଜ୍ୟମାନଙ୍କରେ ରାଜୁତି କରିଥିଲେ । ଘୁମୁସର ରାଜ୍ୟରେ ଭଂଜରାଜାଙ୍କ ଶାସନ ଆରମ୍ଭ ହେଲା । କନ୍ଧ ଓ ସଉରାମାନେ ଥିଲେ

ତାଙ୍କର ମୁଖ୍ୟ ପ୍ରଜା । ସେମାନେ ଖୁବ୍ ବଳଶାଳୀ ଥିଲେ । ସେତେବେଳେ ଏହି ରାଜ୍ୟର ଅଧିକାଂଶ ଅଞ୍ଚଳ ଘନ ଜଙ୍ଗଲରେ ପୂରି ରହିଥିଲା ।

ଶାସନର ସୁବିଧା ପାଇଁ ରାଜା ବନମାଳୀ ଭଂଜ ରାଜ୍ୟକୁ ତିନିଭାଗ କରିଥିଲେ । ପ୍ରତ୍ୟେକ ଭାଗକୁ ଖଣ୍ଡ କୁହାଯାଉଥିଲା । ପ୍ରତ୍ୟେକ ଖଣ୍ଡକୁ କେତେଗୁଡ଼ିଏ ମୁଠା ବା ଉପଖଣ୍ଡରେ ଭାଗ କରାଯାଇଥିଲା । ଏହି ଉପଖଣ୍ଡଗୁଡ଼ିକର ଶାସନ ସେହି ଅଞ୍ଚଳର ଆଦିବାସୀ ସର୍ଦ୍ଦାରମାନଙ୍କ ହାତରେ ଦିଆଗଲା । ଏମାନଙ୍କୁ ମୁଠା ସର୍ଦ୍ଦାର ବା ବିଷୋୟୀ ବୋଲି କୁହାଗଲା । କେତେଜଣ ବିଷୋୟୀମାନଙ୍କ ଉପରେ ଜଣେ ଦୋରାବିଷୋୟୀ ରହିଲେ । ସେହିଦିନଠାରୁ ବିଷୋୟୀ ଓ ଦୋରା ବିଷୋୟୀ ପଦବୀର ଆରମ୍ଭ ହେଲା ।

'ଦୋରା ବିଷୋୟୀ' ବା 'ବିଷୋୟୀ' କୌଣସି ଜାତିର ସାଙ୍ଗିଆ ନୁହେଁ । ଏହା ଗୋଟିଏ ରାଜଦତ୍ତ ଉପାଧି । ପରେ ଏହି ବିଷୋୟୀ ଓ ଦୋରା ବିଷୋୟୀ ପଦବୀ ସଂଜ୍ଞାରେ ପରିଣତ ହୋଇଗଲା ।

ଘୁମୁସରର ବିଷୋୟୀମାନେ ଥିଲେ ବେଣିଆ କନ୍ଧ । ଏମାନେ ସରଳ ବିଶ୍ୱାସୀ, ସାହସୀ ଆଉ ବଳୁଆ । ରାଜା ବନମାଳୀ ଭଂଜ ଘୁମୁସରକୁ ଗଢ଼ିଥିଲେ । ସେ ଏଇ ଆଦିବାସୀମାନଙ୍କର ବଳ ଓ ସାହସ ଦେଖି ତାଙ୍କୁ ଭଲ ପାଉଥିଲେ । ବେଳେବେଳେ ରାଜାଙ୍କ ଶାସନରେ ଅସନ୍ତୁଷ୍ଟ ହୋଇ କନ୍ଧମାନେ ବି ତାଙ୍କ ବିରୁଦ୍ଧରେ ବିଦ୍ରୋହ କରୁଥିଲେ । ଏହି ବଳବାନ କନ୍ଧମାନଙ୍କୁ ଦମନ କରିବା ସେତେ ସହଜ ନଥିଲା ।

ତେଣୁ ରାଜା ବନମାଳୀ ଭଂଜ କନ୍ଧ ସର୍ଦ୍ଦାରମାନଙ୍କୁ ବିଷୋୟୀ ପଦରେ ନିଯୁକ୍ତି ଦେଇଥିଲେ । ପରେ ଏହି ବିଷୋୟୀମାନଙ୍କୁ ସୈନ୍ୟ ବିଭାଗର ଦାୟିତ୍ୱ ଦେଲେ । ସେମାନଙ୍କର ମୁଖ୍ୟ ହୋଇ ରହିଲେ ଦୋରା ବିଷୋୟୀ ।

ରାଜା ଦ୍ୱିତୀୟ ଧନଞ୍ଜୟ ଭଂଜ ଥିଲେ ଭଂଜ ବଂଶର ଶେଷ ରାଜା । ସେ ରାମସିଂ ବିଷୋୟୀଙ୍କ ଜାଗାରେ ତାଙ୍କ ସାନ ଭାଇ କମଳଲୋଚନଙ୍କୁ ଦୋରା ବିଷୋୟୀ କଲେ । ଏହା ଥିଲା ୧୮୧୫ ମସିହାର ଘଟଣା । ଭଂଜ ରାଜାମାନେ ଦୋରା ବିଷୋୟୀମାନଙ୍କ ବୀର-ପଣିଆ ଦେଖି ନାନା ଉପାଧି ଦେଉଥିଲେ । ରାଜା ଧନଞ୍ଜୟ ଭଂଜ କମଳ ଲୋଚନ ଦୋରା ବିଷୋୟୀଙ୍କୁ 'ବାହାଦୁର ବକ୍ସି', 'ବୀରବର ପାତ୍ର' ଓ 'ଅଭୟ' ଉପାଧି ଦେଇଥିଲେ । ରାମସିଂ ବିଷୋୟୀଙ୍କୁ ବି ବାହାଦୁର ବକ୍ସି ଉପାଧି ମିଳିଥିଲା ।

## ଯୁଦ୍ଧ କୌଶଳ ଶିକ୍ଷା

ପିଲାବେଳୁ ଚକରା ଯୁଦ୍ଧ ପ୍ରିୟ ଥିଲେ । ତୋରାବାଡ଼ିର ସେ ଏକା ବୟସର କନ୍ଧ ପିଲାଙ୍କ ସହ କୁସ୍ତିକସରତ କରୁଥିଲେ । ଜଙ୍ଗଲର କଣ୍ଟା ବୁଦା ଭିତରେ ପଶି ଲୁଚକାଳି ଖେଳିବାକୁ ଭଲ ପାଉଥିଲେ । ଜଙ୍ଗଲରେ ଏକୁଟିଆ ବୁଲିବା ଥିଲା ତାଙ୍କର ବଡ଼ ସଉକ । ଦାଦା ଦୋରା ବିଷୋୟୀଙ୍କୁ ତାଙ୍କର ଏସବୁ ଗୁଣ ଭାରି ଭଲ ଲାଗିଲା । ସେ ତାଙ୍କୁ କୁସ୍ତିକସରତ, ଖଣ୍ଡାଖେଳ, ତୀର ଚାଳନା, ବନ୍ଧୁକ ଚାଳନା, ମଲ୍ଲ ଯୁଦ୍ଧ ଓ ଗରିଲା ଯୁଦ୍ଧ କୌଶଳମାନ ଶିଖାଇ ଦେଲେ । ବାଘ ସହିତ ଖେଳୁଥିବା ଚକରାଙ୍କୁ

ଏହା ଆହୁରି ଦୃଢ଼ମନା କରିଦେଲା । ବିଶେଷ ଆଗ୍ରହ ସହକାରେ ସେ ଯୁଦ୍ଧ ବିଦ୍ୟା ଶିକ୍ଷା କଲେ । ଦାଦାଙ୍କ ସହିତ ଜଙ୍ଗଲରେ ବୁଲି ସେ ନାନା ପ୍ରକାର ଯୁଦ୍ଧ ବିଦ୍ୟା ଶିଖିବାର ସୁଯୋଗ ପାଇଥିଲେ ।

**ଚକରାଙ୍କ ବିବାହିତ ଜୀବନ**

ଦାଦା କମଳ ଲୋଚନ ଦୋରା ବିଷୋୟୀ ଥିଲେ ଚକରାଙ୍କ ଜୀବନରେ ସବୁ କିଛି । ବାପା ମାଆ ଛେଉଣ୍ଡ ଥିବାରୁ ହସଖୁସିରେ ସେ ବେଶିଦିନ କଟାଇ ପାରି ନଥିଲେ । ଇଂରେଜମାନେ ଆଦିବାସୀମାନଙ୍କର ଜମିବାଡ଼ି ଛଡ଼େଇ ନେଲେ । ସେମାନଙ୍କୁ ବେଠି ଖଟାଇଲେ । ହଇରାଣ ହରକତ କଲେ । ଇଂରେଜ ସରକାରଙ୍କୁ ଏହି ସରଳ ଆଦିବାସୀମାନେ ବିରୋଧ କଲେ । ୧୮୩୬ ମସିହାରେ କନ୍ଧମାନେ ଇଂରେଜମାନଙ୍କ ବିରୁଦ୍ଧରେ ତେଜି ଉଠିଲେ । ରାମ ସିଂ ବିଷୋୟୀ ସେମାନଙ୍କ ନେତୃତ୍ୱ ନେଲେ । ଏଣୁ ତାଙ୍କର ପୂରା ପରିବାରକୁ ଇଂରେଜମାନେ ହତ୍ୟା କଲେ । ହେଲେ ଚକରା ବିଷୋୟୀ ଚତୁରତାର ସହ ବଞ୍ଚିଗଲେ । ଏହାପରେ ତାଙ୍କ ଜୀବନରେ ଦୁଃଖର ଦିନ ଆରମ୍ଭ ହେଲା ।

ଦାଦା ଦୋରା ବିଷୋୟୀଙ୍କ ସହ ଜଙ୍ଗଲରେ ଚକରା ଲୁଚି ବୁଲିଲେ । ଜଙ୍ଗଲରେ ବୁଲୁ ବୁଲୁ ଦିନେ ଦୋରା ବିଷୋୟୀ ଗୋଟିଏ ସାତ ବରଷର ଝିଅକୁ ପାଇଥିଲେ । ତା'ର ନିଜର ବୋଲି କେହି ନଥିଲେ । ସେଇ ଝିଅ ନାଁ ଥିଲା ତାରକା । ସେତେବେଳେ ଆଦିବାସୀ ସମାଜରେ ବାଲ୍ୟ ବିବାହ ଚଳୁଥିଲା । ସେ ଚକରା ସହିତ ତାରକାର ବିବାହ କରିଦେଲେ ।

ଠିକ୍ ବାରବର୍ଷ ବୟସରେ ଚକରା ବିବାହ କରିଥିଲେ । କନ୍ଧ ସମାଜରେ କେତେ ଜଣ ମୁଖିଆଙ୍କ ଗହଣରେ ଏହି ବାହାଘର ହୋଇଥିଲା । ଇଂରେଜ ସରକାର ଏହାକୁ ସେତେବେଳେ ଜାଣି ପାରିନଥିଲେ । ସେଇଦିନ ବାଳକ ଚକରା ପାଇଁ ତାରକା ହେଲା ଆଉ ଗୋଟିଏ ବୋଝ ।

## ବିପ୍ଳବୀ ଦୋରା ବିଷୋୟୀ

ବିଷୋୟୀ ପରିବାରର ମୁଖିଆ ଥିଲେ କମଳ ଲୋଚନ ଦୋରା ବିଷୋୟୀ । ସେ ଥିଲେ ଦ୍ୱିତୀୟ ଧନଞ୍ଜୟ ଭଂଜଙ୍କ ସେନାପତି । ସେ ଦେଖିବାକୁ ଥିଲେ ବହୁତ ସୁନ୍ଦର । ବିଶାଳ ଶରୀର । ସାହସୀ ଓ ବଳିଷ୍ଠ । ଶିକ୍ଷା ଦୀକ୍ଷା ଥିବାରୁ ରାଜକାର୍ଯ୍ୟ ଠିକ୍ ଭାବରେ କରିପାରୁଥିଲେ । ନଥିପତ୍ର ସବୁ ଯତ୍ନରେ ରଖିପାରୁଥିଲେ । ସେ ଅସ୍ତ୍ର ବିଦ୍ୟାରେ ନିପୁଣ ଥିବାରୁ ରାଜାଙ୍କର ଦେହରକ୍ଷୀ ଥିଲେ । ଗରିଲା ଯୁଦ୍ଧ କୌଶଳରେ ତାଙ୍କର ବିଶେଷ ଜ୍ଞାନ ଥିଲା । ତାଙ୍କର ଅସୀମ ସାହସ ଓ ବୀରତ୍ୱ ପାଇଁ ରାଜା ତାଙ୍କୁ 'ବାହାଦୁର ବକ୍ସି' ଉପାଧି ଦେଇଥିଲେ ।

ରାଜା ଶ୍ରୀକର ଭଂଜ ଏବଂ ତାଙ୍କ ପୁତ୍ର ଦ୍ୱିତୀୟ ଧନଞ୍ଜୟ ଭଂଜଙ୍କ ଭିତରେ ଭଲ ଭାବ ନଥିଲା । ଉଭୟ ରାଜା ଇଂରେଜ ସରକାରଙ୍କୁ ସଲାମୀ ଦେଇ ପାରୁନଥିଲେ । ଏହି କାରଣରୁ ସେମାନେ ରାଜଗାଦି ଛାଡ଼ି ପଳାଇ ଗଲେ । ସେତେବେଳେ ଦୋରା ବିଷୋୟୀ ଥିଲେ ସେନାପତି । ଘୁମୁସର ରାଜଗାଦିକୁ ଇଂରେଜ ହାତକୁ ଦବାକୁ ସେ କେବେହେଲେ ଚାହୁଁ ନଥିଲେ । ତେଣୁ ସେ କୌଣସି ପ୍ରକାରେ ରାଜ୍ୟ ଶାସନକୁ ନିଜେ ରଖିବା ପାଇଁ ଉପାୟ ପାଞ୍ଚିଲେ ।

ସେ ଗୋଟିଏ ଛୋଟ ଝିଅକୁ ପୁଅ ବେଶରେ ସଜାଇ ଦେଲେ । ତା'ର ନାମ ଦେଲେ ବଳଭଦ୍ର ଭଂଜ । ତାକୁ ଧନଞ୍ଜୟ ଭଂଜଙ୍କ ପୁଅ ବୋଲି ପ୍ରଚାର କଲେ । ବଳଭଦ୍ର ଭଂଜକୁ 'ରାଜାପିଲା' କହି ରାଜଗାଦିରେ ବସାଇଲେ । ସେ ନାବାଳକ ଥିବାରୁ ନିଜେ ଦୋରା ବିଷୋୟୀ ତା'ର ଅଭିଭାବକ ହେଲେ । ୧୮୧୫ ଠାରୁ ୧୮୧୯ ମସିହା ଯାଏ ଚାରିବର୍ଷ କାଳ ଘୁମୁସରରେ ରାଜୁତି କଲେ । ଇଂରେଜ ସରକାର କିଛି ହେଲେ ଏହାର ଟେର ପାଇଲେ ନାହିଁ । ସରକାରଙ୍କୁ ସେ ଠିକ୍ ସମୟରେ ରାଜଦେୟ ଦେଉଥିଲେ । ହେଲେ ଧନଞ୍ଜୟ ଭଂଜଙ୍କ ବାକିଆ ପାଉଣା ସେ ଦେଇ ପାରିଲେ ନାହିଁ । ତେଣୁ ଇଂରେଜ ସରକାର ଥରକୁ ଥର ବାକିଆ ପାଉଣା ଆଦାୟ ପାଇଁ ଘୁମୁସରକୁ ଆସୁଥିଲେ । ନାନା ପ୍ରକାର ବାହାନା ଦେଖାଇ ଦୋରା ବିଷୋୟୀଙ୍କୁ ହଇରାଣ ହରକତ କରୁଥିଲେ ।

୧୮୧୬ ମସିହାର କଥା । ରାଜ୍ୟରେ ଘୋର ଅଭାବ ଅନଟନ । ସେ ବର୍ଷ ଚାଷବାସ ଭଲ ହେଲା ନାହିଁ । ଲୋକମାନେ ଖାଇବାକୁ ପାଇଲେ ନାହିଁ । ଇଂରେଜ ସରକାରଙ୍କୁ ରାଜଦେୟ ଦେବା ପାଇଁ ଟଙ୍କାର ଅଭାବ ହେଲା । ଠିକ୍ ଏତିକିବେଳେ ରାଜ୍ୟରେ ପିଣ୍ଡାରୀମାନେ ଚୋରି ଓ ଡକାୟତି ଆରମ୍ଭ କରିଦେଲେ । ପ୍ରାୟ ପାଞ୍ଚ ହଜାର ପିଣ୍ଡାରୀ ବିଭିନ୍ନ ଗାଁ ଗଣ୍ଡାରେ ପଶି ଧନ ସଂପତ୍ତି ଲୁଣ୍ଠନ କଲେ । ଘରଗୁଡ଼ିକରେ ନିଆଁ ଲଗାଇ ଦେଲେ ।

ଇଂରେଜ ସରକାର ଏହି ପିଣ୍ଡାରୀମାନଙ୍କୁ ଦମନ କରିପାରିଲେ ନାହିଁ । ଦୋରା ବିଷୋୟୀ ଏଥିରେ ଅସନ୍ତୁଷ୍ଟ ହୋଇ ପଡ଼ିଲେ ।

ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ବାହାରିଲେ । ସେ କନ୍ଧ ବିଦ୍ରୋହୀମାନଙ୍କୁ ଏକାଠି କରିବାକୁ ବିଭିନ୍ନ ଗାଁ ଗଣ୍ଡା ବୁଲିଲେ । ଇଂରେଜ ବିରୋଧୀ ଭାଷଣ ଦେଲେ । କନ୍ଧ ବିଦ୍ରୋହୀମାନେ ହଜାର ହଜାର



ସଂଖ୍ୟାରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ । ସେମାନଙ୍କର ନେତା ହେଲେ ଦୋରା ବିଷୋୟୀ ।

ଠିକ୍ ଏତିକିବେଳେ ୧୮୧୭ ମସିହାରେ ଖୋର୍ଦ୍ଧାରେ ପାଇକ ବିଦ୍ରୋହ ମୁଣ୍ଡ ଟେକୁଥିଲା । ଖୋର୍ଦ୍ଧା ପାଇକ ବିଦ୍ରୋହର ନେତା ବକ୍ସି ଜଗବନ୍ଧୁ ଦୋରା ବିଷୋୟୀଙ୍କ ପାଖରେ ଆସି ଆଶ୍ରୟ ନେଲେ । ଦୋରା ବିଷୋୟୀ ପ୍ରାୟ ଚାରିହଜାର କନ୍ଧ ପାଇକ ବକ୍ସି ଜଗବନ୍ଧୁଙ୍କ ସହ ଖୋର୍ଦ୍ଧା ପଠାଇଦେଲେ । କନ୍ଧ ପାଇକମାନେ ଖୋର୍ଦ୍ଧା ପାଇକମାନଙ୍କ ସହିତ ମିଶି ବିଦ୍ରୋହ କଲେ । ଘୁମୁସର କନ୍ଧ ପାଇକମାନଙ୍କ ବୀରତ୍ୱ ଦେଖି ବକ୍ସି ଜଗବନ୍ଧୁ ଅବାକ୍ ହୋଇଗଲେ । ଏହାପରେ ଘୁମୁସର ପାଇକମାନେ ପୁରୀ ଓ କଟକ ଯାଏ ମାଡ଼ି ଯାଇଥିଲେ ।

ଖୋର୍ଦ୍ଧା ବିଦ୍ରୋହ ଶେଷ ହେଲା । କନ୍ଧ ପାଇକମାନେ ଘୁମୁସରକୁ ଫେରି ଆସିଲେ । ଏ ଭିତରେ ବଳଭଦ୍ର ଭଂଜ 'ରାଜାପିଲା' ନୁହେଁ ବୋଲି ଇଂରେଜମାନେ ଚେଷ୍ଟାକଲେ । ଫଳରେ ଦୋରା ବିଷୋୟୀଙ୍କୁ ଧରିବା ପାଇଁ ଇଂରେଜମାନେ ଜାଣି ସାରିଥିଲେ । ଦୋରା ବିଷୋୟୀ ରାଜଗାଦି ଛାଡ଼ି ଜଙ୍ଗଲକୁ ପଳେଇ ଗଲେ । ଘୁମୁସର କନ୍ଧମାନଙ୍କୁ ମେଳି କଲେ । ସେମାନଙ୍କ ସାହାଯ୍ୟରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଲଢ଼ିଲେ । ସେମାନଙ୍କୁ ଘୁମୁସରରୁ ବିଦା କରି ଦେଇ ପୁଣିଥରେ ଭଂଜରାଜାଙ୍କୁ ଗାଦିରେ ବସାଇବା ଥିଲା ତାଙ୍କର ଲକ୍ଷ୍ୟ । ତାଙ୍କୁ ଧରିବା ପାଇଁ ଇଂରେଜ ସରକାର ଘୁମୁସର, କୋଦଣ୍ଡା, ନୂଆଗାଁ, ବେଲଗୁଣ୍ଠା,

ନିମପଦର, ଛଉମୁଣ୍ଡା, ବୁଗୁଡ଼ା, ବିଷ୍ଣୁଚକ୍ର, ପୋଇଲି ପଡ଼ା, ବଡ଼ବରୋସିଂ, ଆସିକା ଓ ସୋରଡ଼ା ଆଦି ଜାଗାମାନଙ୍କରେ ସୈନ୍ୟ ଜଗାଇଥିଲେ । ଚତୁର ଦୋରା ବିଷୋୟୀ ଇଂରେଜ ଫୌଜମାନଙ୍କୁ ଭୁଆଁ ବୁଲେଇ ଜଙ୍ଗଲ ଭିତରେ ଲୁଚି ରହିଲେ । ଗରିଲା ଆକ୍ରମଣ କଲେ ।

ପ୍ରାୟ ୩୫ ଜଣ ଇଂରେଜ ଫୌଜ ଆଦିବାସୀ ବିଦ୍ରୋହୀମାନଙ୍କୁ ଗିରଫ କଲେ । ସେମାନଙ୍କୁ ଇଂରେଜ ସୈନ୍ୟମାନେ ନେଇଯାଉଥିଲେ । ଏତିକିବେଳେ ଉଦୟଗିରି ନିକଟରେ କୁମିଙ୍ଗିଆ ଘାଟିରେ ଦୋରା ବିଷୋୟୀ ସେମାନଙ୍କ ଉପରେ ଗରିଲା ଆକ୍ରମଣ କଲେ । ଦୁଇ ଜଣ ଇଂରେଜ ଅଫିସର ଲେଫ୍‌ଟନାଣ୍ଟ ବ୍ରୋମଲି ଓ ଏନ୍‌ସାଇନ୍ ଗିବନଙ୍କ ସମେତ ତେର ଜଣ ସିପାହୀ ମଲେ । ହେଲେ ଇଂରେଜ ସରକାର ଦୋରା ବିଷୋୟୀଙ୍କୁ ଗିରଫ କରିପାରିଲେ ନାହିଁ । ସେ କୌଶଳରେ ସେଠାରୁ ପଳେଇ ଗଲେ । ଅନ୍ୟ ବିଦ୍ରୋହୀମାନଙ୍କୁ ଇଂରେଜ ସୈନ୍ୟମାନେ ଧରି ହତ୍ୟା କଲେ । କେତେକ ବିଦ୍ରୋହୀଙ୍କୁ ବି ବନ୍ଦୀ କଲେ ।

ଦୋରା ବିଷୋୟୀ ଘୁମୁସର, ପାରଳା ଖେମୁଣ୍ଡି, କନ୍ଧମାଳ, ଦଶପଲ୍ଲା, ବଉଦ ଏବଂ ଅନୁଗୁଳର ଘୋର ଜଙ୍ଗଲରେ ଚକରାକୁ ନେଇ ଲୁଚିଲେ । ଅନୁଗୁଳର ରାଜା ସୋମନାଥ ସିଂହ ତାଙ୍କ ଅଞ୍ଚଳରେ ଦୋରା ବିଷୋୟୀ ଲୁଚିଥିବା କଥା ଜାଣିବାକୁ ପାଇଲେ । ମାତ୍ର ପାଞ୍ଚ ହଜାର ଟଙ୍କା ପାଇବା ଲୋଭରେ ସେ ଦୋରା ବିଷୋୟୀଙ୍କୁ ଇଂରେଜ ହାତରେ ଧରାଇଦେଲେ । ୧୮୩୭ ମସିହାରେ ଇଂରେଜ ସରକାର ଦୋରା

ବିଷୋୟୀଙ୍କୁ ମାନ୍ଦ୍ରାଜର ଗୁଟି ସହର ଜେଲକୁ ପଠାଇ ଦେଲେ । ସେଇ ବନ୍ଦୀଶାଳାରେ ସେ ୧୮୪୬ ମସିହା ପର୍ଯ୍ୟନ୍ତ ରାଜବନ୍ଦୀ ଭାବରେ ରହିଲେ । ସେଠାରେ ମୃତ୍ୟୁ ବରଣ କଲେ ।

## ସଂଗ୍ରାମ ପାଇଁ ଶପଥ

ଦୋରା ବିଷୋୟୀଙ୍କ ମୃତ୍ୟୁ ହିଁ ଚକରାଙ୍କୁ ବିଦ୍ରୋହୀ କରାଇଥିଲା । ପିଲାଦିନେ ଝରଣା କୂଳରେ ବାଘ ସହିତ ଖେଳୁଥିବା ସାହସୀ ବାଳକଟି ଏବେ ଇଂରେଜମାନଙ୍କ ସହିତ ଯୁଦ୍ଧ କରିବାର ସୁଯୋଗ ପାଇଲା । ଚଉଦ ବର୍ଷ ବୟସରେ ସେ ହେଲେ ବିପ୍ଳବୀ । ଜନ୍ମରୁ ହିଁ ସେ ଦେଖିଥିଲେ ଇଂରେଜମାନଙ୍କର ଅତ୍ୟାଚାର । ତାଙ୍କ ଆଗରେ ବାପା ମାଆ ଭାଇମାନଙ୍କୁ ହତ୍ୟା କରିଥିଲେ ଇଂରେଜମାନେ । ସବୁକିଛି ଅତ୍ୟାଚାର ସେ ସହିଥିଲେ । ଛୋଟ ବୟସରେ ବା ସେ କଅଣ କରି ପାରିଥା'ନ୍ତେ । ଦାଦା ଦୋରା ବିଷୋୟୀଙ୍କୁ ପାଇ ସବୁ ଦୁଃଖ କଷ୍ଟ ଭୁଲି ଯାଇଥିଲେ । ବାପା ମାଆଙ୍କର ସ୍ନେହ ଆଦର କ'ଣ ସେ ଜାଣି ନଥିଲେ । ବଣ ଜଙ୍ଗଲରେ ବୁଲି ଫଳମୂଳ ଖାଇ ଜୀବନ କଟାଇଥିଲେ ।

ଏସବୁ ବିପଦକୁ ଖାତିର ନକରି ଦାଦାଙ୍କୁ ଯୁଦ୍ଧରେ ସାହାଯ୍ୟ କରିଥିଲେ । କିନ୍ତୁ ଯେଉଁଦିନ ଇରେଜମାନେ ଦାଦାଙ୍କୁ ଗିରଫ କଲେ ସେହିଦିନୁ ସେ ନିଜକୁ ବୀର ବୋଲି ମନେ କଲେ । ବଣ ଜଙ୍ଗଲରେ ବୁଲି ଦାଦାଙ୍କ ପାଖରୁ ଶିଖିଥିବା ଯୁଦ୍ଧ କୌଶଳକୁ ସେ ଏକୁଟିଆ କାମରେ ଦେଖାଇବାକୁ ସୁଯୋଗ ପାଇଥିଲେ । ତା'ପରେ ସେ ହେଲେ ବିଦ୍ରୋହୀ ।

ଇଂରେଜ ବିରୁଦ୍ଧରେ ପ୍ରତିଶୋଧ ନେବା ପାଇଁ ସେ ଶପଥ ନେଲେ । ପ୍ରଥମେ ସେ ଦାଦା ଦୋରା ବିଷୋୟୀଙ୍କୁ ଇଂରେଜମାନଙ୍କ ହାତରୁ ମୁକ୍ତ କରିବା ପାଇଁ ପଣ କଲେ ।

ଅନୁଗୁଳ ରାଜା ସୋମନାଥ ସିଂହ ବିଶ୍ୱାସ ଘାତକତା କଲେ । ଫଳରେ ଚକରା ଅନୁଗୁଳ ଜଙ୍ଗଲରୁ କନ୍ଧମାଳ ଅଞ୍ଚଳକୁ ପଳେଇ ଗଲେ । ସେ ଇଂରେଜମାନଙ୍କୁ ଖାଲି ଘୁମୁସର କାହିଁକି ସାରା ଦେଶରୁ ହଟାଇବା ପାଇଁ ବଜ୍ର ଶପଥ ନେଲେ । ଭାରତର ମୁକ୍ତି ସଂଗ୍ରାମରେ ନିଜକୁ ହଜାଇ ଦେଲେ ।

ଦୋରା ବିଷୋୟୀଙ୍କ ମରିଯିବା ପରେ ଘୁମୁସରର କନ୍ଧମେଳି ଭାଙ୍ଗି ଯିବାକୁ ବସିଥିଲା । ବୀର ଚକରା ବିଷୋୟୀ ନିଜେ କନ୍ଧମେଳିର ନେତୃତ୍ୱ ନେଲେ । ଘୁମୁସରର କନ୍ଧ ଓ ସଉରାମାନଙ୍କୁ ଏକାଠି କଲେ । "ମୁକ୍ତି ସେନା ବାହିନୀ" ଗଠନ କଲେ । ସେମାନଙ୍କୁ ଇଂରେଜ ବିରୋଧୀ ଭାଷଣ ଦେଇ ଲଢ଼େଇ ପାଇଁ ଡାକରା ଦେଲେ ।

## ମୁକ୍ତି ସଂଗ୍ରାମ ଆରମ୍ଭ

ଚକରା ବିଷୋୟୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଶପଥ ନେଲେ । ସେ ୧୮୪୬ ମସିହାରେ ବିଦ୍ରୋହ ଆରମ୍ଭ କଲେ । ସେ ପ୍ରଥମେ ଘୁମୁସରରେ କନ୍ଧମାନଙ୍କୁ ମେଳି କଲେ । ଘୁମୁସରର ରାଜଗାଦିକୁ ଇଂରେଜଙ୍କୁ ଦେବାପାଇଁ ସେ ଚାହୁଁ ନ ଥିଲେ ।

ରାଜା ଦ୍ୱିତୀୟ ଧନଞ୍ଜୟ ଭଂଜଙ୍କ ବାରବର୍ଷରେ ପୁଅ ପୀତାମ୍ବର ଭଂଜଙ୍କୁ ସେ ରାଜା କରିବା ପାଇଁ ଚେଷ୍ଟା କଲେ । ସେହି ଅଞ୍ଚଳରେ ପ୍ରଜାମାନେ 'ରାଜାପିଲା' ବୋଲି କହୁଥିଲେ । ସେଇ ରାଜା ପିଲାକୁ ରାଜଗାଦିରେ ବସାଇବା ପାଇଁ ଚକରା ଚେଷ୍ଟା କଲେ । ଇଂରେଜମାନଙ୍କୁ ତଡ଼ିବାକୁ ସେ ଶପଥ ନେଇଥିଲେ । ଚକରାଙ୍କ ସଂଗଠନ ଦୁର୍ବଳ ଥିଲା । ଫଳରେ. ଇଂରେଜମାନେ ରାଜା ପିଲାକୁ ରାଜ ଗାଦିରେ ବସାଇ ଦେଲେ ନାହିଁ ।

ସେତେବେଳେ ଇଂରେଜ ଅଫିସର ମ୍ୟାକ୍‌ଫରସନ୍ ମେରିଆ ଦମନ ପାଇଁ ଆସିଥିଲେ । ମେରିଆ ଦମନ ନାଁରେ ଆଦିବାସୀଙ୍କ ଉପରେ ଅତ୍ୟାଚାର କରୁଥିଲେ । ସେମାନଙ୍କ ଧର୍ମ ବିଶ୍ୱାସକୁ ଭାଙ୍ଗିବାକୁ ଚେଷ୍ଟା କରୁଥିଲେ । ଚକରା ଆଦିବାସୀ ବିଦ୍ରୋହୀମାନଙ୍କୁ ଧରି ତାଙ୍କ ଧର୍ମ ଉପରେ ଆଘାତ ନ କରିବା ପାଇଁ ମ୍ୟାକ୍‌ଫରସନ୍‌କୁ ଅନୁରୋଧ କଲେ । ହେଲେ ସେ ଚକରାଙ୍କ ଅନୁରୋଧ ରଖିଲେ ନାହିଁ । ଏହାପରେ ଚକରା ବଉଦ ଅଞ୍ଚଳର ଆଦିବାସୀ ନେତା ନବଘନ କୁଅଁରଙ୍କ ସହ ଯୋଗାଯୋଗ କଲେ । ବିଦ୍ରୋହୀମାନଙ୍କୁ ଧରି କନ୍ଧମାଳ ଅଞ୍ଚଳକୁ ଗଲେ । ଫୁଲବାଣୀର ବିଶିପଡ଼ାଠାରେ ସେତେବେଳେ ଇଂରେଜମାନେ ଶିବିର ଖୋଲିଥିଲେ । ଚକରାଙ୍କ ନେତୃତ୍ୱରେ ବିଦ୍ରୋହୀମାନେ ସେହି ଶିବିରକୁ ନିଆଁ ଲଗାଇ ଜାଳି ଦେଲେ । ଉପାୟ ନ ପାଇ ମ୍ୟାକ୍‌ଫରସନ ରସୁଲକୋଣ୍ଡାରେ ଥିବା ମୁଖ୍ୟଦପ୍ତରକୁ ପଳାଇଗଲେ । ଏହାର କିଛି ଦିନ ପରେ ସେ ଇଂରେଜ ଫୌଜଧରି କନ୍ଧମାଳକୁ ଆସିଲେ । ବିଶିପଡ଼ା ଘଟଣାର



ପ୍ରତିଶୋଧ ନେବା ପାଇଁ ଗାଁ ଗଣ୍ଡାରେ ପଶି ଲୋକମାନଙ୍କ ଉପରେ ଅତ୍ୟାଚାର କଲେ । ଘରଗୁଡ଼ିକରେ ନିଆଁ ଲଗାଇ ଦେଲେ ।

୧୮୪୬ ମସିହାରେ ମ୍ୟାକ୍‌ଫରସନ୍ ନବଘନ କୁଅଁରଙ୍କ ପୁଅ ବୀର କୁଅଁରଙ୍କୁ ଗିରଫ କଲେ । ଏହାର ପ୍ରତିବାଦରେ ଘୁମୁସରଠାରେ

ବଡ଼ ଧରଣର ବିଦ୍ରୋହ ଦେଖାଦେଲା । ଚ଼କରା କନ୍ଧମାଳର ଆଦିବାସୀମାନଙ୍କୁ ବିଦ୍ରୋହରେ ମିଶିବା ପାଇଁ ଅନୁରୋଧ କଲେ । ଏହି ବିଦ୍ରୋହରେ କନ୍ଧମାଳ ଓ ଚ଼କାପାଦର ପାଇକମାନେ ଅଧିକ ସଂଖ୍ୟାରେ ଯୋଗ ଦେଇଥିଲେ । ବିଦ୍ରୋହକୁ ଦମନ କରିବା ପାଇଁ ଜେନେରାଲ ଡାଇସ୍ ବିଦ୍ରୋହୀମାନଙ୍କୁ ଗିରଫ କଲେ । ଚ଼କରା ବିଷୋୟୀ ଓ ନବଘନ କୁଅଁର ଚ଼ତୁରତାର ସହିତ ଅନୁଗୁଳ ଅଞ୍ଚଳକୁ ପଳାଇଗଲେ । ଇଂରେଜ ସରକାରଙ୍କ ଭୟରେ ଅନୁଗୁଳର ରାଜା ଚ଼କରା ବିଷୋୟୀ ଓ ନବଘନ କୁଅଁରଙ୍କୁ ଧରାଇ ଦେବା ପାଇଁ ଲାଗି ପଡ଼ିଲେ ।

୧୮୪୭ ମସିହାରେ ଚ଼କରା ବିଷୋୟୀ ଚ଼କାପାଦରେ ପାଇକମାନଙ୍କୁ ଏକଜୁଟ କଲେ । ଇଂରେଜ ସରକାର ଯେତେ ଚ଼େଷ୍ଟା କଲେ ବି ତାଙ୍କୁ ଧରିପାରିଲେ ନାହିଁ । ଏହା ଦେଖି ଜେନେରାଲ୍ ଡାଇସ୍ ଚ଼କରା ବିଷୋୟୀ ଓ ନବଘନ କୁଅଁରଙ୍କୁ କ୍ଷମା କରିଦେବା ପାଇଁ ଘୋଷଣା କଲେ । ହେଲେ କିଛି ଫଳ ହେଲା ନାହିଁ । ଏହି ଆଦିବାସୀ ବିଦ୍ରୋହୀ ନେତାମାନେ ଇଂରେଜ ସରକାରଙ୍କୁ ଧରା ନ ଦେଇ ଜଙ୍ଗଲରେ ଲୁଚି ଛପି ବିଦ୍ରୋହ ଚ଼ଳାଇଲେ ।

ବହୁତ ଚେଷ୍ଟା ପରେ ଇଂରେଜମାନେ ଚ଼କରା ବିଷୋୟୀ ବଉଦ ଓ ସୋନପୁର ଜଙ୍ଗଲରେ ଲୁଚିଥିବା କଥା ଜାଣିବାକୁ ପାଇଲେ । ହେଲେ ତାଙ୍କୁ ଧରିବାର ବାଟ ନ ଥିଲା ।

ଚ଼କରା ବିଷୋୟୀଙ୍କୁ ଧରିବା ପାଇଁ ଇଂରେଜ ସରକାର ତିନି ହଜାର ଟଙ୍କା ଘୋଷଣା କଲେ । ସେତେବେଳେ ଘୁମୁସର, ବୌଦ୍ଧକନ୍ଧମାଳ

ଅଞ୍ଚଳର ଲୋକେ ଇଂରେଜ ବିରୁଦ୍ଧରେ ଲଢିବା ପାଇଁ ବାଟ ଖୋଜୁଥିଲେ । ତେଣୁ ଚକରା ବିଷୋୟୀଙ୍କୁ ଧରାଇ ଦେବାପାଇଁ କେହି ବି ଜଣେ ବାହାରିଲେ ନାହିଁ । ସେହି ଲୋକମାନେ ଚକରାଙ୍କୁ ପାଇ ନିଜର ନେତାଭାବେ ଗ୍ରହଣ କଲେ । ଚକରା ସେମାନଙ୍କୁ ଇଂରେଜ ବିରୋଧୀ ଭାଷଣ ଦେଇ ଏକଜୁଟ ହେବାପାଇଁ ମତାଇଲେ ।

୧୮୪୮ ମସିହାଠାରୁ ୧୮୫୨ ମସିହାଯାଏ ଚାରିବର୍ଷ କାଳ ଚକରା ଚୁପ ହୋଇ ରହିଲେ । ଏତିକିବେଳେ ସେ ସଂଗଠନରେ ମାତିଲେ । ଦିନରାତି ପରିଶ୍ରମ କରି ବଣ ଜଙ୍ଗଲରେ ବୁଲିଲେ । ଥରକୁ ଥର ଜାଗା ବଦଳାଇ ରାତିରେ କନ୍ଧଗାଁମାନଙ୍କୁ ଯାଉଥିଲେ । ସେଠାରେ କନ୍ଧ ବିଦ୍ରୋହୀମାନଙ୍କୁ ଏକାଠି କରୁଥିଲେ । କନ୍ଧମାଳ ଅଞ୍ଚଳର ଡେକାଙ୍ଗୀ ଗ୍ରାମରେ କିଛିଦିନ ଲୁଚି ରହିଥିଲେ । ତାଙ୍କର ଲୁଚିବା କଥା ଇଂରେଜମାନେ ଜାଣିବାରୁ ସେ ପାଟଣା ରାଜ୍ୟର ଆଠ ଗାଁକୁ ଚାଲିଗଲେ । ଇଂରେଜ ସରକାର ଚକରାଙ୍କୁ ଧରିବା ପାଇଁ ନାନା ପ୍ରକାର ଉପାୟ ପାଞ୍ଚିଲେ ।

ସେତେବେଳେ କନ୍ଧମାଳର ତହସିଲଦାର ଥିଲେ ଦିନବନ୍ଧୁ ପଟ୍ଟନାୟକ । ସେ ଜଣେ ଓଡ଼ିଆ ଲୋକ । ଇଂରେଜ ସରକାରଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚକରାଙ୍କୁ ଧରାଇ ଦେବାକୁ ସେ ଯୋଜନାମାନ କଲେ । ଦିନବନ୍ଧୁ ପଟ୍ଟନାୟକ ସୈନ୍ୟସାମନ୍ତ ଧରି ଆଠ ଗାଁକୁ ଗଲେ । ସେଠାରେ ପହଞ୍ଚିବା ଆଗରୁ ଚକରା କୌଶଳକ୍ରମେ ଖସି ଯାଇଥିଲେ । ଚକରାଙ୍କ ସହଯୋଗୀ ବିଦ୍ରୋହୀ ଭୁତିଆ ସର୍ଦ୍ଦାରଙ୍କ ପରିବାର ଓ ଅନ୍ୟ ଆଦିବାସୀ ବିଦ୍ରୋହୀମାନଙ୍କୁ ଗିରଫ କରାଗଲା ।

ଇଂରେଜ ସରକାରଙ୍କୁ ଚ଼କରା ଭୟ କରୁନଥିଲେ । ମରିବାକୁ ହେଲେ ବୀରପରି ଇଂରେଜମାନଙ୍କ ସହିତ ଲଢ଼େଇ କରି ମରିବାକୁ ହେବ । ଏହାଥିଲା ତାଙ୍କର ପଣ । ଘୁମୁସର ରାଜ୍ୟପାଇଁ ନିଜ ଜୀବନ ଦେବାପାଇଁ ସେ ଶପଥ ନେଇଥିଲେ । ଗୋଳା ବାରୁଦ ବନ୍ଧୁକ ଗୁଳି ଖାଇ ମରିବାପାଇଁ ବି ଚାହୁଁ ନଥିଲେ । ତେଣୁ ସେ ଜାଗା ବଦଳାଇ ଇଂରେଜ ସୈନ୍ୟମାନଙ୍କ ଉପରେ ଅଚାନକ ଆକ୍ରମଣ କରୁଥିଲେ । ଇଂରେଜମାନେ ଚ଼କରାଙ୍କୁ ଧରିବାପାଇଁ ବିଶିପଡ଼ାଠାରେ ଶିବିର ଖୋଲିଥିଲେ । ଚ଼କରା କନ୍ଧମାଳରେ ରହିବା ନିରାପଦ ମନେ କଲେନାହିଁ । ସେ ପୁଣି ଥରେ ଘୁମୁସର ଅଞ୍ଚଳକୁ ଫେରିଆସିଲେ ।

ଘୁମୁସରରେ ନେତୃତ୍ୱ ଅଭାବରୁ କନ୍ଧମାନଙ୍କ ବିଦ୍ରୋହ ଶିଥିଳ ହୋଇ ଯାଇଥିଲା । ଚ଼କରା ବିଷୋୟୀଙ୍କୁ ଦେଖି ବିଦ୍ରୋହୀ କନ୍ଧ ପାଇକମାନେ ପୁଣି ଜାଗି ଉଠିଲେ । ଘୁମୁସରର ରାଜଗାଦିରେ 'ରାଜାପିଲା'ଙ୍କୁ ବସାଇବା ପାଇଁ ଚେ଼ଷ୍ଟାକଲେ । ସେତେବେଳେ ଘୁମୁସରର ସବୁଜାଗାରେ ଇଂରେଜ ଫୌଜମାନେ ଜଗିରହିଥିଲେ । ତେଣୁ ତାଙ୍କର ଚେ଼ଷ୍ଟା ସଫଳ ହୋଇ ପାରିଲା ନାହିଁ । ଏହାପରେ ସେ ରାଜାପିଲାଙ୍କୁ ସାଙ୍ଗରେ ଧରି ପୁଣିଥରେ କନ୍ଧମାଳକୁ ଫେରି ଆସିଲେ । ଡେକାଙ୍ଗୀ ଗାଁରେ ରହିଲେ ।

ରାଜାପିଲା ପୀତାମ୍ବର ଭଞ୍ଜ ବଣ ଜଙ୍ଗଲରେ ବୁଲି ହାଲିଆ ହୋଇ ଗଲେ । ସେ ଚ଼କରାଙ୍କ ସହିତ ଜଙ୍ଗଲରେ ବୁଲିବାକୁ ରାଜି ହେଲେ ନାହିଁ । ସେ ରାଜଗାଦିରେ ବସିବାର ଲୋଭ ଛାଡ଼ିଦେଲେ । ଶେଷରେ

ଇଂରେଜ ସରକାରଙ୍କ ପାଖରେ ଚାକିରି କଲେ । ସୁଖରେ ରହିଲେ । ଚକରାଙ୍କୁ ଏଇ ଘଟଣା ବହୁତ ବାଧିଲା । ସେ ସେଥିରେ ମନ ଖରାପ ନ କରି ବିଦ୍ରୋହୀମାନଙ୍କୁ ମତାଇବାରେ ଲାଗିଲେ ।

ସେତେବେଳେ ବଉଦ ଓ ଅନୁଗୁଳ ରାଜାମାନଙ୍କୁ ଇଂରେଜ ସରକାର ହାତ କରି ନେଇଥିଲେ । ସେମାନଙ୍କ ସାହାଯ୍ୟରେ ଚକରାଙ୍କୁ ଧରିବା ପାଇଁ ଯୋଜନା କଲେ । ରାଜାମାନେ ସେମାନଙ୍କ ଗୁପ୍ତଚର ପଠାଇ ଚକରା ବିଷୋୟୀଙ୍କୁ ଠାବ କଲେ । ତେଣୁ ଚକରା ମଦନପୁର, ପାଟଣାଗଡ଼ ଓ ସୋନପୁର ଜଙ୍ଗଲ ଭିତରେ ଆଶ୍ରୟ ନେଲେ । ସେ ୧୮୫୯ ମସିହାରେ ପାଟଣା ଗଡ଼ ବିଦ୍ରୋହରେ ନେତୃତ୍ୱ ନେଲେ । ଲେଫ୍ଟନାଣ୍ଟ ଡୋନେଲ ଇଂରେଜ ଫୌଜଙ୍କୁ ନେଇ ସେଠାରେ ଶିବିର ଖୋଲିଥିଲେ । ସେଇ ଶିବିର ଉପରେ ଚକରା ଆକ୍ରମଣ କଲେ ।

ଦିନବନ୍ଧୁ ପଟ୍ଟନାୟକ ସୈନ୍ୟସାମନ୍ତଙ୍କ ସହ ଚକରାଙ୍କୁ ଧରିବା ପାଇଁ ପାଟଣା ଗଡ଼ ଜଙ୍ଗଲରେ ବୁଲିଲେ । ହେଲେ ସେ ଚକରାଙ୍କୁ ଧରି ପାରିଲେ ନାହିଁ । ଚକରାଙ୍କ ସହଯୋଗୀ ବିଦ୍ରୋହୀ ନବଘନ କଅଁରଙ୍କୁ ସୋନପୁର ଜଙ୍ଗଲରୁ ଗିରଫ କଲେ । ଆଠଗାଁ ସର୍ଦ୍ଦାର ଧରମସିଂ ମାନଧାତା ବି ଗିରଫ ହୋଇ ବନ୍ଦୀ ହେଲେ । ଚକରା ବିଷୋୟୀଙ୍କ ସବୁବିଦ୍ରୋହୀ ସାଥୀମାନେ ଇଂରେଜ ହାତରେ ଧରା ପଡ଼ିଲେ । ତାଙ୍କୁ ଧରିବା ପାଇଁ ଇଂରେଜ ଫୌଜ ଚାରିଆଡ଼େ ଛକି ବସିଲେ । ସେହି କାରଣରୁ ସେ ବିଦ୍ରୋହକୁ ଆଗେଇ ନେଇ ପାରିଲେ ନାହିଁ ।

## ସତର୍କ ଘଣ୍ଟି

ଚକରା ବିଷୋୟୀ ଥିଲେ ଦେବୀଭକ୍ତ । ମାଆ ବନଦୁର୍ଗାଙ୍କୁ ସେ ପୂଜା କରୁଥିଲେ । ଚନ୍ଦ୍ରଗିରି ଜଙ୍ଗଲ ଭିତରେ ସେ ମାଆ ରଣଘଣ୍ଟ



ଠାକୁରାଣୀଙ୍କ ପାଖରେ ଆଶ୍ରୟ ନେଇଥିଲେ । ତାଙ୍କୁ ପୂଜାକରି ସେ ସବୁ ବିପଦରୁ ରକ୍ଷା ପାଉଥିଲେ । ତାଙ୍କରି ଆଶୀର୍ବାଦରେ ସେ ଇଂରେଜ ସୈନ୍ୟମାନଙ୍କୁ ଜୟ କରି ପାରୁଥିଲେ । ଇଂରେଜ ସୈନ୍ୟଙ୍କ ଗୋଳାବାରୁଦ ଓ ବନ୍ଧୁକ ଗୁଳିକୁ ସେ ଡରୁ ନଥିଲେ । ମାଆ ରଣଘଣ୍ଟ ଠାକୁରାଣୀ ଚକରାଙ୍କ ଉପରେ ସନ୍ତୁଷ୍ଟ ଥିଲେ ବୋଲି ତାଙ୍କର ବିଶ୍ୱାସ ଥିଲା ।

ଘୁମୁସରର ଲେମ୍ବେଇ ପାଖ ଜଙ୍ଗଲ ଭିତରେ ଚକରା ଗୋଟିଏ ସାମରିକ ଘାଟି ତିଆରି କରିଥିଲେ । ସେଇ ଘାଟିରେ ରଣ ଘଣ୍ଟ ଠାକୁରାଣୀଙ୍କ ମୂର୍ତ୍ତିରଖି ସେ ପୂଜା କରୁଥିଲେ । ସେଠାରେ ବିଦ୍ରୋହୀ ପାଇକମାନଙ୍କୁ ଅସ୍ତ୍ରଚାଳନା, ଖଣ୍ଡା ଯୁଦ୍ଧ ଓ ଗରିଲାଯୁଦ୍ଧ କୌଶଳମାନ ତାଲିମ ଦେଉଥିଲେ । ଏହି ଘାଟିକୁ ଚକ୍ରଘାଟି ବୋଲି କୁହାଯାଉଥିଲା । ସେହି ଘାଟିରେ ସେ ଦୁଇଟି ବଡ଼ ବଡ଼ ଘଣ୍ଟି ରଖି ପୂଜା କରୁଥିଲେ । ଯୁଦ୍ଧକୁ ବାହାରିବା ଆଗରୁ ଘଣ୍ଟି ବଜାଇ ବିଦ୍ରୋହୀମାନଙ୍କୁ ସତର୍କ କରିଦେଉଥିଲେ । ବିଦ୍ରୋହୀ କନ୍ଧମାନେ ଘଣ୍ଟି ଶବ୍ଦ ଶୁଣି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଯାଉଥିଲେ । ଘୁମୁସର, ବୌଦ୍ଧ ଓ କନ୍ଧମାଳ ଅଞ୍ଚଳରେ ବି ଚକରା ଘାଟି ପ୍ରତିଷ୍ଠା କରିଥିଲେ । ଗାଲେରି, ଦୁର୍ଗାପ୍ରସାଦ ଓ କଳାଧାର ଘାଟି ଗୁଡ଼ିକ ମୁଖ୍ୟଥିଲା । ଏହି ଘାଟି ଗୁଡ଼ିକରେ ସବୁବେଳେ ବିଦ୍ରୋହୀମାନେ ଜଗି ରହୁଥିଲେ । ବିପଦ ମାଡ଼ିଆସିବା ଆଗରୁ ମା ଠାକୁରାଣୀ ଘଣ୍ଟି ବଜାଇ ଚକରାଙ୍କୁ ସତର୍କ କରି ଦେଉଥିଲେ ବୋଲି ଲୋକ ବିଶ୍ୱାସ ଥିଲା ।

ଚକରା ବିଷୋୟୀ ନିଜେ ଜଣେ ତନ୍ତ୍ର ସାଧକ ଥିଲେ । ତନ୍ତ୍ର ବଳରେ ସେ ବିପଦରୁ ନିଜକୁ ରକ୍ଷା କରୁଥିଲେ । ସେ ତାରକାଙ୍କୁ ବିବାହ କରି ଅଧିକ ବଳବାନ ହୋଇ ପାରିଥିଲେ । କାରଣ ତନ୍ତ୍ରବିଦ୍ୟାରେ ତାଙ୍କ ଅପେକ୍ଷା ତାରକା ଅଧିକ ଧୁରନ୍ଧର ଥିଲେ । ସ୍ୱାମୀଙ୍କ ଦେହ ଖରାପ ହେଲେ ବା ଯୁଦ୍ଧରେ ଆଘାତ ପାଇଲେ ସେ ତାଙ୍କର ସେବା ଯତ୍ନ କରୁଥିଲେ । ଚକରା ବିପଦରେ ପଡ଼ିଲେ ହଠାତ୍ ସେ ତାଙ୍କ ପାଖରେ ପହଞ୍ଚି ଯାଉଥିଲେ । ଅନ୍ୟସମୟରେ ସେମାନଙ୍କୁ ଏକାଠି ଦେଖିବା ସହଜ ନଥିଲା । ଲୋକେ ଚକରା ଓ ତାରକାଙ୍କୁ ଶିବଶକ୍ତିର ଅବତାର ବୋଲି କହୁଥିଲେ । ଦୁହିଁଙ୍କୁ ଏକାଠି ଦେଖିବା ବଡ଼ ପୁଣ୍ୟବୋଲି ଆଦିବାସୀମାନଙ୍କ ମଧ୍ୟରେ ବିଶ୍ୱାସ ଥିଲା ।

ସେତେବେଳେ ଆଦିବାସୀ ସମାଜରେ ପ୍ରଥମେ ଝିଅ ଜନ୍ମ ହେବା ଗୋଟିଏ ପାପ ବୋଲି କହୁଥିଲେ । ତେଣୁ ଝିଅ ଜନ୍ମ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ମାରି ଦେଉଥିଲେ । ଜଙ୍ଗଲର ବାଘ ମୁହଁକୁ ଠେଲି ଦେଉଥିଲେ । ସେମିତି ଗୋଟିଏ ଆଦିବାସୀ ପରିବାରର ଝିଅ ଥିଲା ତାରକା । ଜନ୍ମହେବା ପରେ ତା'ର ବାପା ମାଆ ଜଙ୍ଗଲରେ ନେଇ ତାକୁ ଛାଡ଼ି ଦେଇ ଆସିଥିଲେ । ସେହି ତାରକା ବଣଜଙ୍ଗଲରେ ବଢ଼ିଥିଲା । ତାରକା ସତରେ ଜଣେ ମଣିଷ ନଥିଲା । ମଣିଷ କେବେ ନ ଖାଇ ବଞ୍ଚି ପାରିବ ନାହିଁ । ତାରକା ସାତବର୍ଷ ଜଙ୍ଗଲରେ ବଢ଼ିଥିଲା । ତେଣୁ ଲୋକେ କହୁଥିଲେ, ତାରକା ମାଆ ଦୁର୍ଗାଙ୍କର ଅବତାର ।

ଦୋରା ବିଷୋୟୀ ତାରକାଙ୍କୁ ଜଙ୍ଗଲରୁ ପାଇ ଚକରାଙ୍କ ସହିତ ବିବାହ କରାଇ ଦେଇଥିଲେ । ତାରକାଙ୍କ ବଳରେ ଚକରା ବଳବାନ ଥିଲେ । ଦେବୀଙ୍କ ଆଶୀର୍ବାଦ ପାଇ ଶକ୍ତିଶାଳୀ ଇଂରେଜ ଫୌଜମାନଙ୍କୁ ଆକ୍ରମଣ କରିପାରୁଥିଲେ । ବିଜୁଳି ପରି ହଠାତ୍ ଗରିଲା ଆକ୍ରମଣ କରି ପାରୁଥିବାରୁ, ଇଂରେଜମାନେ ବି ଚକରାଙ୍କ ପାଖରେ ଦୈବଶକ୍ତି ଥିବାର ଅନୁମାନ କରୁଥିଲେ ।

## ବିପ୍ଳବୀ ମହାବୀର

୧୮୩୯ ମସିହାଠାରୁ ୧୮୫୬ ମସିହାଯାଏ ଚକରା ବିଷୋୟୀ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼େଇ କରିଥିଲେ । ମାତ୍ର ତେର ବର୍ଷ ବୟସରେ ସେ ବିଦ୍ରୋହୀ ସାଜି କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ସଂଗ୍ରାମ କରିଥିଲେ । ନିଜ ରାଜ୍ୟ ଘୁମୁସରକୁ ଇଂରେଜମାନଙ୍କ ହାତକୁ ନ ଦେବା ସେ ପାଇଁ ସେ ଶପଥ କରିଥିଲେ । ଆଦିବାସୀ ସମାଜରେ ଜନ୍ମହୋଇଥିବାରୁ ବାହାର ଦୁନିଆ ବିଷୟରେ ତାଙ୍କର ଜ୍ଞାନ ନ ଥିଲା । ଇଂରେଜ ସରକାରଙ୍କୁ ଧରା ନ ଦେବା ପାଇଁ ସେ ଘୁମୁସର ଛାଡ଼ି ପଡ଼ୋଶୀ ରାଜ୍ୟର ଜଙ୍ଗଲରେ ଆଶ୍ରୟ-ନେଇଥିଲେ ।

କନ୍ଧମାଳ, ବୌଦ୍ଧ, ଅନୁଗୁଳ, ପାଟଣାଗଡ଼, କଳାହାଣ୍ଡି ଓ ପାରଳାଖେମୁଣ୍ଡି ରାଜ୍ୟମାନଙ୍କୁ ଯାଇ ତାଙ୍କର ବିଦ୍ରୋହୀ ସଂଗଠନ ଗଢ଼ିଥିଲେ । ସେମାନଙ୍କ ମୁଣ୍ଡଭିତରେ ଇଂରେଜ ବିରୋଧୀ ଭାବ ପୂରାଇଥିଲେ । ସେହି ସ୍ଥାନମାନଙ୍କର କନ୍ଧ ପାଇକ ବିଦ୍ରୋହୀମାନଙ୍କୁ ଏକାଠି କରି ଇଂରେଜ ବିରୁଦ୍ଧରେ ଲଢ଼େଇ କରିଥିଲେ । ସବୁ ଜାଗାରେ ସେ

ନେତୃତ୍ୱ ନେଇ ଇଂରେଜ ସରକାରଙ୍କୁ ଆତଙ୍କିତ କରି ଦେଇଥିଲେ ।

ନିଜ ରାଜ୍ୟ ଘୁମୁସରରେ ଚକରା ତ ନେତୃତ୍ୱ ନେଇଥିଲେ । ସବୁରାଜ୍ୟରେ ବି ତାଙ୍କର ନେତୃତ୍ୱ ଥିଲା । ତା'ପରେ ସେ ସାରା ଦେଶରୁ ଇଂରେଜ ସରକାରଙ୍କୁ ତଡ଼ିଦେବା ପାଇଁ ସଂଗ୍ରାମ କରିଥିଲେ । ଏତେ ଦିନ ଧରି ଜଣେ ବିପ୍ଳବୀ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼େଇ କରିବା ଘଟଣା ଇତିହାସରେ ବିରଳ । ପ୍ରକୃତରେ ଇଂରେଜ ସରକାର ତାଙ୍କୁ ଜଣେ ବିପ୍ଳବୀ ମହାବୀର ବୋଲି ତାଙ୍କ ନଥିପତ୍ରରେ ଲେଖିଯାଇଛନ୍ତି ।

**ବିଦ୍ରୋହର ଅବସାନ**

ଘୁମୁସର ବିଦ୍ରୋହର ବିପ୍ଳବୀ ବୀର ଥିଲେ ଚକରା ବିଷୋୟୀ । ଇଂରେଜ ସରକାରଙ୍କ ବିରୁଦ୍ଧରେ ଲଢ଼େଇ କରି ସେ ବୀରତ୍ୱର ପରିଚୟ ଦେଇଥିଲେ । ୧୮୩୬ ମସିହାରେ ଘୁମୁସର ବିଦ୍ରୋହ ଘଟିଥିଲା । ଦୋରା ବିଷୋୟୀ ସେହି ବିଦ୍ରୋହର ନେତୃତ୍ୱ ନେଇଥିଲେ । ଚକରା ବିଷୋୟୀ ବି ସେହି ବିଦ୍ରୋହରେ ପ୍ରଥମଥର ଯୋଗ ଦେଇଥିଲେ । ୧୮୩୭ ମସିହା ଠାରୁ ୧୮୫୬ ମସିହା ଯାଏ କୋଡ଼ିଏ ବର୍ଷକାଳ ଇଂରେଜମାନଙ୍କ ବିରୁଦ୍ଧରେ ସେ ଯୁଦ୍ଧ କରିଥିଲେ । ଘୁମୁସର, ବୌଦ୍ଧ-କନ୍ଧମାଳ, ପାରଳାଖେମୁଣ୍ଡି, ପାଟଣାଗଡ଼ ଓ କଳାହାଣ୍ଡି ଆଦି ରାଜ୍ୟକୁ ସେ ନିଜର ଯୁଦ୍ଧକ୍ଷେତ୍ର କରିଥିଲେ । ସବୁ ରାଜ୍ୟର କନ୍ଧ ପାଇକମାନଙ୍କର ନେତୃତ୍ୱ ନେଇ ସେ ଇଂରେଜମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇ ଥିଲା ।

ଘୁମୁସରର ଶେଷ ଭଂଜବଂଶୀୟ ରାଜା ଦ୍ୱିତୀୟ ଧନଞ୍ଜୟ ଭଂଜ ୧୮୩୫ ମସିହାରେ ଉଦୟଗିରି ଜଙ୍ଗଲଭିତରେ ମୃତ୍ୟୁ ବରଣ କରିଥିଲେ । ମରିବା ଆଗରୁ ଦୋରା ବିଷୋୟୀଙ୍କୁ ତାଙ୍କ ପରିବାରର ଦାୟିତ୍ୱ ନେବାପାଇଁ ସେ ଅନୁରୋଧ କରିଥିଲେ । ସେହିଠାରେ ଦୋରା ବିଷୋୟୀ ବି ରାଜାଙ୍କ ପରିବାରର ଦାୟିତ୍ୱ ବୁଝିବା ପାଇଁ କଥା ଦେଇ ଥିଲେ । କିନ୍ତୁ ସେହି ଦାୟିତ୍ୱ ବୁଝିବା ଆଗରୁ ସେ ଇଂରେଜ ସୈନ୍ୟଙ୍କ ହାତରେ ଧରାପଡ଼ି ବନ୍ଦୀ ଭାବରେ ଶେଷ ନିଶ୍ୱାସ ଛାଡ଼ିଥିଲେ । ତେଣୁ ବିଷୋୟୀଙ୍କ କଥା ରଖିବା ପାଇଁ ଘୁମୁସରରେ ରାଜତନ୍ତ୍ର ପ୍ରତିଷ୍ଠା କରିବାକୁ ଚକରା ଚେଷ୍ଟା କଲେ । ଦୋରା ବିଷୋୟୀଙ୍କ ମରିବା ପରେ ୧୮୪୬ ମସିହାଠାରୁ ୧୮୫୬ ମସିହା ଯାଏ ଦଶବର୍ଷକାଳ ସେ ନିଜେ ନେତୃତ୍ୱ ନେଇ ଲଢ଼େଇ କରିଥିଲେ ।

ଚକରା ବିଷୋୟୀ ଜନ୍ମ ହେବା ବେଳକୁ ଘୁମୁସରରେ ବିଦ୍ରୋହର ନିଆଁ ଜଳୁଥିଲା । ସେ ପିଲାବେଳୁ ବାପା ମାଆ ଛେଉଣ୍ଡ ହୋଇ ଜଙ୍ଗଲରେ ବୁଲିଥିଲେ । ଥରକ ପାଇଁ ସେ ଘୁମୁସର ରାଜଗାଦିରେ ବସିବାକୁ ଚିନ୍ତା କରି ନଥିଲେ ।ତାଙ୍କର କିଛି ସ୍ୱାର୍ଥ ନଥିଲା । ରାଜ୍ୟର ଓ ରାଜାଙ୍କର ସ୍ୱାର୍ଥପାଇଁ ନିଜ ଜୀବନକୁ ବିପଦ ଭିତରକୁ ସେ ଠେଲି ଦେଇଥିଲେ । ଦେଶରୁ ଇଂରେଜମାନଙ୍କୁ ତଡ଼ି ଦେଇ ପାରିଲେ ସେ ଶାନ୍ତିରେ ରହିପାରିବେ । ଘୁମୁସରବାସୀ ତଥା ଦେଶବାସୀ ବି ଆରାମରେ ରହିବେ । ଏକଥା ସେ ଭାବୁଥିଲେ ।



ଧନୁତୀର ଧରି ଇଂରେଜମାନଙ୍କର ବନ୍ଧୁକ ଗୁଳିର ସେ ସାମନା କରିଥିଲେ । ଗରିଲା ଆକ୍ରମଣ କରି ଶହ ଶହ ଇଂରେଜ ଫୌଜଙ୍କୁ ମାରି ପକାଇ ଥିଲେ । ଇଂରେଜ ଫୌଜମାନେ ତାଙ୍କୁ ଧରି ପାରି ନଥିଲେ ।

ଚକରାଙ୍କୁ ଧରାଇ ଦେବା ପାଇଁ ତିନିହଜାର ଟଙ୍କା ପୁରସ୍କାର ଘୋଷଣା କରାଯାଇ ଥିଲା । ସେ ଆତ୍ମସମର୍ପଣ କଲେ କ୍ଷମାଦିଆଯିବ ବୋଲି କୁହାଯାଇଥିଲା । କିନ୍ତୁ ଚକରା ନିଜ ମୁଣ୍ଡକୁ ଇଂରେଜଙ୍କ ପାଖରେ ବିକିବା ପାଇଁ ଚାହିଁଲେ ନାହିଁ । ଇଂରେଜମାନଙ୍କ ଠାରୁ ସେ ଦୂରରେ ରହିଲେ । ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଲାଗିଲେ । ଭାରତର ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଡେଲହାଉସି ଚକରା ବିଷୋୟୀଙ୍କର ବୀରତ୍ୱ ଦେଖି ତାଙ୍କୁ ଜଣେ ଯୋଦ୍ଧା ଓ ଭାରତର ଜଣେ ବିପ୍ଳବୀ ମହାବୀର ବୋଲି ନାମିତ କଲେ । ଶେଷରେ ଏହି ମହାବୀରଙ୍କୁ ଧରିବା ପାଇଁ ଘୁମୁସରରେ ଥିବା ଇଂରେଜ ଫୌଜ ଯଥେଷ୍ଟ ନୁହେଁ ବୋଲି ମାଡ୍ରାସରେ ଥିବା ଇଂରେଜ ମୁଖ୍ୟଙ୍କୁ ଚିଠିଲେଖିଥିଲେ ।

ସେତେବେଳେ ରାଜଦେୟ ଆଦାୟ କରିବା ପାଇଁ ଇଂରେଜମାନେ ଗୋଟିଏ ପରେ ଗୋଟିଏ ରାଜ୍ୟ ଦଖଲ କରି ଚାଲିଲେ । ଘୁମୁସର, ବୌଦ୍ଧ, କନ୍ଧମାଳ, ଅନୁଗୁଳ, କଳାହାଣ୍ଡି ଓ ପାଟଣାଗଡ଼ ରାଜ୍ୟକୁ ସେମାନେ ଦଖଲ କରି ନେଲେ ।

ଏହାପରେ ଏହି ରାଜ୍ୟ ଗୁଡ଼ିକର ରାଜାମାନେ ଇଂରେଜ ସରକାରଙ୍କର ଗୋଲାମ ହୋଇଗଲେ । ଚକରା ବିଷୋୟୀଙ୍କୁ ଧରାଇ ଦେବା ପାଇଁ ମେସାନେ ଲାଗିପଡ଼ିଲେ ।

ଯେଉଁମାନେ ନିଜର ସ୍ୱାର୍ଥକୁ ବଡ଼ ବୋଲି ଭାବୁଥିଲେ, ସେମାନେ ଥିଲେ ଦେଶ ଦ୍ରୋହୀ । ଫିରିଙ୍ଗିମାନଙ୍କ ଚାଟୁକାର ହୋଇ ଆମର

ଦେଶପ୍ରେମୀ ବିପ୍ଳବୀମାନଙ୍କ ବିରୁଦ୍ଧରେ ସେମାନେ ଲାଗିଥିଲେ । କିଛି ଟଙ୍କା ଲୋଭରେ ସେମାନଙ୍କୁ ବି ଧରାଇ ଦେଇଥିଲେ । ଚକରା ବିଷୋୟୀ କେବଳ ବୀର ନଥିଲେ, ସେଥିଲେ ବିଚକ୍ଷଣ ଓ ବୁଦ୍ଧିମାନ ଲୋକ । ଫିରିଙ୍ଗିମାନେ ଯେତେ ଚେଷ୍ଟା କଲେ ବି ଶେଷଯାଏ ତାଙ୍କୁ ଧରି ପାରିନଥିଲେ । ଚକରା ବିଷୋୟୀଙ୍କ ସହଯୋଗୀ ନବଘନ କୁଅଁର, ରେଣ୍ଡମାଝି, ଭୁତିଆ ସର୍ଦ୍ଦାର, ରାମ ରାମ ମଳିକ, ନାରାୟଣ ବଡ଼ ମଳିକ ଓ ହରଦେବ କୁଅଁରଙ୍କୁ ଦିନବନ୍ଧୁ ପଟ୍ଟନାୟକଙ୍କ ଗୁପ୍ତଚରମାନେ ଧରାଇ ଦେଇ ଥିଲେ ।

ନିଜର ସହଯୋଗୀମାନେ ଫିରିଙ୍ଗିମାନଙ୍କ ପାଖରେ ଧରା ପଡ଼ିଗଲେ । ଫଳରେ ଚକରା ବିଷୋୟୀଙ୍କର ବଳ ଭାଙ୍ଗିଗଲା । ଘୁମୁସର, ବୌଦ୍ଧ ଓ କନ୍ଧମାଳରେ ବିଦ୍ରୋହ ଧୀରେ ଧୀରେ ଶାନ୍ତହେବାକୁ ଲାଗିଲା । ଶେଷରେ ଫିରିଙ୍ଗିମାନେ ବିଦ୍ରୋହ ଦମନ କରିବାରେ ସଫଳ ହେଲେ । ଚକରାଙ୍କ ଲକ୍ଷ୍ୟ ପୂରଣ ହୋଇ ପାରିଲା ନାହିଁ । ୧୮୫୬ ମସିହା ଶେଷଭାଗ ଆଡ଼କୁ ଚକରା ଇଂରେଜମାନଙ୍କ ଆଖି ଆଗରୁ ଅଚାନକ କେଉଁ ଆଡ଼େ ଚାଲିଗଲେ । ତାପରେ ଇଂରେଜ ସରକାର ଶାନ୍ତିରେ ନିଶ୍ୱାସ ମାରିଲେ ।

**ଶେଷ ଜୀବନ**

ମହାନ୍ ବିପ୍ଳବୀ ବୀର ଚକରା ବିଷୋୟୀଙ୍କ ଶେଷଜୀବନ କଥା ଏ ଯାଏ ସଠିକ୍ ଭାବେ ଜଣାଯାଇ ନାହିଁ । ତାଙ୍କୁ ଧରିବା ପାଇଁ ଇଂରେଜ

ସରକାର ବହୁ ପରିଶ୍ରମ କରିଥିଲେ । ହେଲେ ଧରିପାରିନଥିଲେ, ସେ ହଠାତ୍ କେଉଁ ଆଡ଼େ ଉଭେଇ ଗଲେ । ତା'ର କୌଣସି ଖବର ରଖିବାରେ ଇଂରେଜମାନେ ସଫଳ ହୋଇ ପାରିନଥିଲେ । ୧୮୫୬ ମସିହା ଅକ୍ଟୋବର ମାସ ଠାରୁ ଚକରା ଆଉ ଦେଖାଗଲେ ନାହିଁ । ତା'ର ଠିକ୍ ସାତ ମାସ ପରେ ସିପାହୀ ବିଦ୍ରୋହ ଆରମ୍ଭ ହୋଇଥିଲା । ଚକରା ବିଷୋୟୀ ବଞ୍ଚିଥିଲେ ନିଶ୍ଚୟ ସେହି ବିଦ୍ରୋହର ନେତୃତ୍ୱ ନେଇଥାନ୍ତେ । ତେଣୁ କୌଣସି ଏକ ଅଜଣା ସ୍ଥାନରେ ସେ ମରିଯାଇଥିବାର ଆଶଙ୍କା କରାଯାଏ ।

ସିପାହୀ ବିଦ୍ରୋହ ବେଳକୁ ସେ ତେତିଶ ବର୍ଷର ଯୁବକ । ସେହି ବୟସରେ ତାଙ୍କୁ ଆକ୍ରମଣ କରି ମାରିବା ସହଜ ନଥିଲା । ବଣ ଜଙ୍ଗଲରେ କେଉଁଠି ହିଂସ୍ରଜନ୍ତୁଙ୍କ ହାବୁଡ଼ରେ ପଡ଼ି ସେ ମରିଥିବା ବିଶ୍ୱାସ କରି ହୁଏ ନାହିଁ । ସେ ସାମାନ୍ୟ ଯୋଦ୍ଧା ନଥିଲେ । ସମ୍ମୁଖ ଯୁଦ୍ଧରେ ତାଙ୍କୁ ମାରିବା ସମ୍ଭବ ନଥିଲା । ତଥାପି ତାଙ୍କ ମୃତ୍ୟୁ ବିଷୟରେ ନାନା ମତ ଶୁଣିବାକୁ ମିଳେ । ହେଲେ ଗଂଜାମ ଜିଲ୍ଲା ଗେଜେଟିୟର ଅନୁସାରେ ଇଂରେଜ ସରକାରଙ୍କ ଗୁପ୍ତଚରମାନେ ଚକରା ବିଷୋୟୀଙ୍କୁ ଧରି ଫାଶୀ ଦେଇଥିଲେ ।

ଆଉ କେତେକଙ୍କ ମତରେ ଚକରା ବିଷୋୟୀଙ୍କ ସହଯୋଗୀ ରାମ ରାମ ମଲିକ, ନାରାୟଣ ବଡ଼ ମଲିକ ଓ ହରଦେବ କୁଅଁରଙ୍କୁ ଫିରିଙ୍ଗି ଫୌଜମାନେ ଗିରଫ କରି ନେଇଯାଉଥିଲେ । ସେତେବେଳେ ଚକରା ତେଲନଦୀ କୂଳ ଜଙ୍ଗଲ ଭିତରେ ଲୁଚି ରହିଥିଲେ । ନିଜର

ସହଯୋଗୀମାନଙ୍କୁ ଫିରିଙ୍ଗି ଫୌଜ ହାତରୁ ଛଡ଼ାଇ ଆଣିବା ପାଇଁ ସେ ଏକୁଟିଆ ସେମାନଙ୍କ ଉପରେ ଆକ୍ରମଣ କଲେ । ତେଲ ନଦୀର କଙ୍କାଳୀଘାଟ ବାଲି ଉପରେ ଯୁଦ୍ଧ ହେଲା । ସେଇ ଅନ୍ଧାର ରାତିରେ ଫିରିଙ୍ଗି ଫୌଜମାନେ ଚକରା ବିଷୋୟୀଙ୍କୁ ହତ୍ୟା କଲେ ବା କୌଣସି ଅଜଣା ଜାଗାକୁ ପଠାଇଦେଲେ । ସେ କଥା କେହି ଜାଣି ପାରିଲେ ନାହିଁ । ଯେଉଁମାନେ ଜାଣିଥିଲେ ଇଂରେଜ ସରକାରଙ୍କ ଭୟରେ ସେମାନେ ପାଟି ଖୋଲିଲେ ନାହିଁ । ସେ ଯାହା ହେଉ ଚକରା ବିଷୋୟୀ ସବୁଦିନ ପାଇଁ କେଉଁଠି ହଜିଗଲେ । ସେ ଖବର ଆଜି ବି କାହା ପାଖରେ ନାହିଁ ।

ମହାନ୍ ବିପ୍ଳବୀ ବୀର ଚକରା ବିଷୋୟୀଙ୍କ ଲକ୍ଷ୍ୟ ପୂରଣ ହୋଇଛି । ତାଙ୍କର ଆଜୀବନ ସଂଗ୍ରାମର ଫଳ ଆମେ ପାଇଛୁ । ଇଂରେଜ ମାନେ ଦେଶ ଛାଡ଼ି ଯାଇଛନ୍ତି । ଦେଶ ସ୍ୱାଧୀନ ହୋଇଛି । ଆମେ ଆଜି ସେହି ସ୍ୱାଧୀନ ଦେଶର ନାଗରିକ ହୋଇଛୁ ।

***

ଦେଶପ୍ରେମୀ ବିପ୍ଳବୀମାନଙ୍କ ବିରୁଦ୍ଧରେ ସେମାନେ ଲାଗିଥିଲେ । କିଛି ଟଙ୍କା ଲୋଭରେ ସେମାନଙ୍କୁ ବି ଧରାଇ ଦେଇଥିଲେ । ଚକରା ବିଷୋୟୀ କେବଳ ବୀର ନଥିଲେ, ସେଥିଲେ ବିଚକ୍ଷଣ ଓ ବୁଦ୍ଧିମାନ ଲୋକ । ଫିରିଙ୍ଗିମାନେ ଯେତେ ଚେଷ୍ଟା କଲେ ବି ଶେଷଯାଏ ତାଙ୍କୁ ଧରି ପାରିନଥିଲେ । ଚକରା ବିଷୋୟୀଙ୍କ ସହଯୋଗୀ ନବଘନ କୁଅଁର, ରେଣ୍ଡମାଝି, ଭୁଡିଆ ସର୍ଦ୍ଦାର, ରାମ ରାମ ମଳିକ, ନାରାୟଣ ବଡ଼ ମଳିକ ଓ ହରଦେବ କୁଅଁରଙ୍କୁ ଦିନବନ୍ଧୁ ପଟ୍ଟନାୟକଙ୍କ ଗୁପ୍ତଚରମାନେ ଧରାଇ ଦେଇ ଥିଲେ ।

ନିଜର ସହଯୋଗୀମାନେ ଫିରିଙ୍ଗିମାନଙ୍କ ପାଖରେ ଧରା ପଡ଼ିଗଲେ । ଫଳରେ ଚକରା ବିଷୋୟୀଙ୍କର ବଳ ଭାଙ୍ଗିଗଲା । ଘୁମୁସର, ବୌଦ୍ଧ ଓ କନ୍ଧମାଳରେ ବିଦ୍ରୋହ ଧୀରେ ଧୀରେ ଶାନ୍ତହେବାକୁ ଲାଗିଲା । ଶେଷରେ ଫିରିଙ୍ଗିମାନେ ବିଦ୍ରୋହ ଦମନ କରିବାରେ ସଫଳ ହେଲେ । ଚକରାଙ୍କ ଲକ୍ଷ୍ୟ ପୂରଣ ହୋଇ ପାରିଲା ନାହିଁ । ୧୮୫୬ ମସିହା ଶେଷଭାଗ ଆଡ଼କୁ ଚକରା ଇଂରେଜମାନଙ୍କ ଆଖି ଆଗରୁ ଅଚାନକ କେଉଁ ଆଡ଼େ ଚାଲିଗଲେ । ତାପରେ ଇଂରେଜ ସରକାର ଶାନ୍ତିରେ ନିଶ୍ୱାସ ମାରିଲେ ।

**ଶେଷ ଜୀବନ**

ମହାନ୍ ବିପ୍ଳବୀ ବୀର ଚକରା ବିଷୋୟୀଙ୍କ ଶେଷଜୀବନ କଥା ଏ ଯାଏ ସଠିକ୍ ଭାବେ ଜଣାଯାଇ ନାହିଁ । ତାଙ୍କୁ ଧରିବା ପାଇଁ ଇଂରେଜ

ସରକାର ବହୁ ପରିଶ୍ରମ କରିଥିଲେ । ହେଲେ ଧରିପାରିନଥିଲେ, ସେ ହଠାତ୍ କେଉଁ ଆଡ଼େ ଉଭେଇ ଗଲେ । ତା'ର କୌଣସି ଖବର ରଖିବାରେ ଇଂରେଜମାନେ ସଫଳ ହୋଇ ପାରିନଥିଲେ । ୧୮୫୬ ମସିହା ଅକ୍ଟୋବର ମାସ ଠାରୁ ଚକରା ଆଉ ଦେଖାଗଲେ ନାହିଁ । ତା'ର ଠିକ୍ ସାତ ମାସ ପରେ ସିପାହୀ ବିଦ୍ରୋହ ଆରମ୍ଭ ହୋଇଥିଲା । ଚକରା ବିଷୋୟୀ ବଞ୍ଚିଥିଲେ ନିଶ୍ଚୟ ସେହି ବିଦ୍ରୋହର ନେତୃତ୍ୱ ନେଇଥାନ୍ତେ । ତେଣୁ କୌଣସି ଏକ ଅଜଣା ସ୍ଥାନରେ ସେ ମରିଯାଇଥିବାର ଆଶଙ୍କା କରାଯାଏ ।

ସିପାହୀ ବିଦ୍ରୋହ ବେଳକୁ ସେ ତେତିଶ ବର୍ଷର ଯୁବକ । ସେହି ବୟସରେ ତାଙ୍କୁ ଆକ୍ରମଣ କରି ମାରିବା ସହଜ ନଥିଲା । ବଣ ଜଙ୍ଗଲରେ କେଉଁଠି ହିଂସ୍ରଜନ୍ତୁଙ୍କ ହାବୁଡ଼ରେ ପଡ଼ି ସେ ମରିଥିବା ବିଶ୍ୱାସ କରି ହୁଏ ନାହିଁ । ସେ ସାମାନ୍ୟ ଯୋଦ୍ଧା ନଥିଲେ । ସମ୍ମୁଖ ଯୁଦ୍ଧରେ ତାଙ୍କୁ ମାରିବା ସମ୍ଭବ ନଥିଲା । ତଥାପି ତାଙ୍କ ମୃତ୍ୟୁ ବିଷୟରେ ନାନା ମତ ଶୁଣିବାକୁ ମିଳେ । ହେଲେ ଗଂଜାମ ଜିଲ୍ଲା ଗେଜେଟିୟର ଅନୁସାରେ ଇଂରେଜ ସରକାରଙ୍କ ଗୁପ୍ତଚରମାନେ ଚକରା ବିଷୋୟୀଙ୍କୁ ଧରି ଫାଶୀ ଦେଇଥିଲେ ।

ଆଉ କେତେକଙ୍କ ମତରେ ଚକରା ବିଷୋୟୀଙ୍କ ସହଯୋଗୀ ରାମ ରାମ ମଳିକ, ନାରାୟଣ ବଡ଼ ମଳିକ ଓ ହରଦେବ କୁଅଁରଙ୍କୁ ଫିରିଙ୍ଗି ଫୌଜମାନେ ଗିରଫ କରି ନେଇଯାଉଥିଲେ । ସେତେବେଳେ ଚକରା ତେଲନଦୀ କୂଳ ଜଙ୍ଗଲ ଭିତରେ ଲୁଚି ରହିଥିଲେ । ନିଜର

ସହଯୋଗୀମାନଙ୍କୁ ଫିରିଙ୍ଗି ଫୌଜ ହାତରୁ ଛଡ଼ାଇ ଆଣିବା ପାଇଁ ସେ ଏକୁଟିଆ ସେମାନଙ୍କ ଉପରେ ଆକ୍ରମଣ କଲେ । ତେଲ ନଦୀର କଙ୍କାଳୀଘାଟ ବାଲି ଉପରେ ଯୁଦ୍ଧ ହେଲା । ସେଇ ଅନ୍ଧାର ରାତିରେ ଫିରିଙ୍ଗି ଫୌଜମାନେ ଚକରା ବିଷୋୟୀଙ୍କୁ ହତ୍ୟା କଲେ ବା କୌଣସି ଅଜଣା ଜାଗାକୁ ପଠାଇଦେଲେ । ସେ କଥା କେହି ଜାଣି ପାରିଲେ ନାହିଁ । ଯେଉଁମାନେ ଜାଣିଥିଲେ ଇଂରେଜ ସରକାରଙ୍କ ଭୟରେ ସେମାନେ ପାଟି ଖୋଲିଲେ ନାହିଁ । ସେ ଯାହା ହେଉ ଚକରା ବିଷୋୟୀ ସବୁଦିନ ପାଇଁ କେଉଁଠି ହଜିଗଲେ । ସେ ଖବର ଆଜି ବି କାହା ପାଖରେ ନାହିଁ ।

ମହାନ୍ ବିପ୍ଳବୀ ବୀର ଚକରା ବିଷୋୟୀଙ୍କ ଲକ୍ଷ୍ୟ ପୂରଣ ହୋଇଛି । ତାଙ୍କର ଆଜୀବନ ସଂଗ୍ରାମର ଫଳ ଆମେ ପାଇଛୁ । ଇଂରେଜ ମାନେ ଦେଶ ଛାଡ଼ି ଯାଇଛନ୍ତି । ଦେଶ ସ୍ୱାଧୀନ ହୋଇଛି । ଆମେ ଆଜି ସେହି ସ୍ୱାଧୀନ ଦେଶର ନାଗରିକ ହୋଇଛୁ ।

***

